# ଦ୍ୱା ସୁପର୍ଣ୍ଣା

ସୌଭାଗ୍ୟ କୁମାର ମିଶ୍ର



ଫ୍ରେଣ୍ଡସ୍ ପବ୍ଲିଶର୍ସ

ପୁସ୍ତକ ପ୍ରକାଶକ ଓ ବିକ୍ରେତା

ବିନୋଦ ବିହାରୀ, କଟକ-୨

# ଦ୍ୱା ସୁପର୍ଣ୍ଣା

ଲେଖକ : ସୌଭାଗ୍ୟକୁମାର ମିଶ୍ର, ଗ୍ରନ୍ଥସ୍ୱତ୍ୱ : ଶ୍ରୀମତୀ ମଞ୍ଜୁଳା ମିଶ୍ର, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ ପବ୍ଲିଶର୍ସ, ବିନୋଦବିହାରୀ, କଟକ - ୭୫୩୦୦୨, ପ୍ରଚ୍ଛଦ ଜ୍ଞାନେନ୍ଦ୍ର କୁମାର ରଥ, ମୁଦ୍ରଣ : ସତ୍ୟବ୍ରତ ପ୍ରେସ୍, ପିଠାପୁର, କଟକ-୧, ପ୍ରଥମ ସଂସ୍କରଣ : ୧୯୮୪,



**DWA SUPARNA**

( An collection of poems )

Author : Soubhagya Kumar Misra, @ Srimati Manjula Misra, Published by : Friends' Publishers, Binodbehari, Cuttack-753002, Orissa, (India). Cover design : Gyanendra Kumar Rath, Printed at Satyabrata Press, Pithapur, Cuttack - 753 001, First Edition · 1984. Price : Rs. 16-00



ଶ୍ରୀମତୀ ରମ୍ଭା ଦେବୀ

ଶ୍ରୀଯୁକ୍ତ ରଘୁରାମ ମିଶ୍ର

ଙ୍କରକମଳେଷୁ

ଦ୍ୱା ସୁପର୍ଣ୍ଣା ସଯୁଜା ସଖାୟା
ସମାନଂ ବୃକ୍ଷଂ ପରିଷସ୍ୱଜାତେ
ତୟୋରନ୍ୟଃ ପିପ୍ପଲଂ ସ୍ୱାଦ୍ୱତ୍ତ୍ୟ—
ନଶ୍ନନ୍ନନ୍ୟୋ ଅଭିଚାକଶୀତି

( ଗୋଟିଏ ଗଛରେ ଦୁଇଟି ପକ୍ଷୀ ସବୁବେଳେ ମିଳିମିଶି ସାଙ୍ଗ ହୋଇ ରହୁଛନ୍ତି । ଗୋଟିଏ ପକ୍ଷୀ ସୁଆଦିଆ ଫଳ ଖାଉଥିବା ବେଳେ ଅନ୍ୟ ପକ୍ଷୀଟି ସେ ଦୃଶ୍ୟ ଦେଖିବାରେ ଲାଗିଛି । )

— ଶ୍ୱେତାଶ୍ୱତରୋପନିଷଦ୍, ୪ର୍ଥ ଅଧ୍ୟାୟ, ୬ଷ୍ଠ ସୂକ୍ତ ।

## ସୌଭାଗ୍ୟ କୁମାର ମିଶ୍ରଙ୍କ ଅନ୍ୟାନ୍ୟ ବହି

॥ କବିତା ॥

ଅନ୍ଧନେପଥ୍ୟ : ୧୯୬୮

ମଧ୍ୟପଦଲୋପୀ : ୧୯୭୦

ନଷ୍ଟଚନ୍ଦ୍ର : ୧୯୭୩

Countermeasures : 1973

ଅଷ୍ଟ ମଧୁମାଛି : ୧୯୭୭, ୧୯୮୦

( ଓଡ଼ିଶା ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ )

ବଜ୍ରଯାନ : ୧୯୮୧

॥ ଅନୁବାଦ ॥

ଘୁଣପୋକ ॥ ଶୀର୍ଷେନ୍ଦୁ ମୁଖୋପାଧ୍ୟାୟ

ଚରଙ୍ଗର ସ୍ୱର ॥ ଷ୍ଟି କଲ୍‌ଷ

ଦୁର୍ଗ ॥ ଫ୍ରାଂଜ କାଫ୍‌କା

॥ ସଂପାଦନା ଓ ସମାଲୋଚନା ॥

ଭଣ୍ଡୁ ସାହିତ୍ୟ ପରିଚୟ, ୧୯୮୨

**Bernard Malamud**

**1984**

# ସୂଚୀ

# ଧଳା ପକ୍ଷୀ କଳା ପକ୍ଷୀ

ଆମ ପୁରୁଣା ଆକାଶ ପରି ବଡ଼ ଆକାଶଟାଏ ନହେଲେ
ଧଳା ପକ୍ଷୀ କେବଳ ଉଡ଼ିପାରିବ,
କଳା ପକ୍ଷୀ କେବଳ ଉଡ଼ିପାରିବ,
କଦାପି ଧଳା ପକ୍ଷୀ କଳା ପକ୍ଷୀ ଦ'ଜଣଯାକ ନୁହେ ।

ଏବେ ତ ଖାଲି ଧଳା ପକ୍ଷୀଟି ଉଡ଼ୁଚି,
ଆକାଶ ବଦଳି ଯାଉଚି ଜଲ୍ଦି ଜଲ୍ଦି ସା'ରୁ ରି'କୁ,
ରି'ରୁ ଗା'କୁ ସୂର୍ଯ୍ୟର ଆଙ୍ଗୁଠି ସାଙ୍ଗେ ତାଳ ଦେଇ;
ବେଳ ହେଲାଣି ହୁଏତ କଳା ପକ୍ଷୀଟି ଆସି ଉଡ଼ିବ ।

କେତେ ସଞ୍ଜରେ ଆସି ପୁରୁଣା ବାଡ଼ ଉପରେ ରହିଯାଏ,
ବେଶୀ ହେଲେ ଓହ୍ଲାଇ ଆସେ ତଳକୁ, ଅପରାଜିତା ଫୁଲକୁ,
ଲଜକୁଳି ଲଟାକୁ କି ବାଉଁଶଗଣ୍ଠି ଛତୁ ଉପରକୁ,
ଆଜି ସେ କିଛୁ ଚିହ୍ନି ପାରେନା, ନା ଧଳା ନା କଳା ପକ୍ଷୀଙ୍କି,
ଯଦି ସବୁ କିଛୁ ବଦଳି ଯାଉନଥାଏ, ହଜିଯାଉନଥାଏ ।

# ଦ୍ୱାର

ଦ୍ୱାର ଖୋଲ ଦଅନା ।
ଜ୍ଞାନ କେବଳ ଅବିଶ୍ୱାସର, ଖଚର,
ସମୁଦ୍ରରେ ଭାସି ଆସି
କୂଳରେ ଲାଗିଥିବା କାଠଗଣ୍ଡର,
ବାଟଯାକ ସୋରିଷ ବୁଣିଯିବାର ପ୍ରୟୋଜନର ।

ଦ୍ୱାର ଖୋଲ ଦଅନା,
ଅବଗୁଣ୍ଠନ ଖୋଲିଦେଲେ ଯେ ଆଖି ଲାଖିଯିବ
ଅସଂଖ୍ୟ ରତ୍ନଖଚିତ
ଶୂନ୍ୟ ସିଂହାସନରେ, ବାଲିପନ୍ତାରେ ।

ନିର୍ବାଣର ଶବ୍ଦ ବା କି ପ୍ରମାଣ
ଉଆସ ଉପବନର ପଥ ସଠିକ କହିଁଲବାର ?
ତମେ ସେଦିନ ରାତ୍ରିରେ ଚିତ୍କାର କରିଉଠିଲ,
ମୋର ସମସ୍ତ ସାନ୍ତ୍ୱନା ଓ ନିର୍ଦ୍ଦେଶ ବୃଥା ହେଲା,
ତମେ ତ ଠାବ କରିପାରିଲ ନାହିଁ, ଚିହ୍ନିଲ ନାହିଁ
ଆଖିର ଅନ୍ତରାଳରେ ଗର୍ଜୁଥିବା ରକ୍ତମୁଖା ସିଂହକୁ ।

( ଦୁଇ )

ଆମେ ଅନେକ କାଳ ଅପେକ୍ଷା କଲେଣି, ସତ ।
ଅନେକ ଯାତ୍ରା ପଟୁଆର
ଅଦୃଶ୍ୟ ହୋଇଗଲେଣି ନଗର ସୀମାରେ ।
ଆମର ଚରମ ସ୍ୱପ୍ନ ଗୋଟାଏ ମୃତ୍ୟୁ
ଶବ୍ଦ ଓ ଦୃଶ୍ୟର ରାଜ୍ୟ ବାହାରେ ।
ମାରବଟାର ସଂପତ୍ତି
ଆମର କେବେ ହୋଇ ପାରେନା;
ଆମ ଆନନ୍ଦର ନ ଚକ୍ଷୁ ହାତ ଗୋଡ଼, ନ ରକ୍ତ ଆଙ୍ଗୁଠି ।

( ତିନ )

# ଅଗ୍ରଣୀ

ସମସ୍ତଙ୍କ ଆଗରୁ ସେ ଆସିଯାଇଥିଲା,
ବର୍ତ୍ତମାନ ବିରକ୍ତ ଓ କ୍ଳାନ୍ତ ଦିଶୁଚି ମୁହଁ ।
ବାଲିରେ ଗାର କାଟିବା ତା'ର ସରିଲାଣି,
ପାଣି ଦାଢ଼ରେ ଗୁଲିବା ତା'ର ସରିଲାଣି,
ଓଦା ପ୍ୟାଣ୍ଟ୍ ଶୁଖି ଆସିଲାଣି,
ସେ ଏଥର ଫେରିଯିବ,
ହେଇ, ଉଠି ଠିଆହେଲାଣି,
ଝାଡ଼ ଝୁଡ଼ ହେଲାଣି ।

ପାରୁଛନ୍ତି ଏଯାଏଁ ଯେ ଭଲକରି ହାସଲ କରିନାହିଁ
ମାତ୍ର ଝାମ୍ପି ଉଠାଇନେବାର କୌଶଳ,
ଶିଶୁଟି ଠିକ୍ ପାଦ ପକାଇ ଜାଣିନାହିଁ,
ବର୍ନି ଧରିନାହିଁ ମସଲାମୁଢ଼ି ବାଦାମ୍‌ବାଲାର,
ପାଣି ଉଠିବାରେ ଲାଗିଚି, ଭାଙ୍ଗିବାରେ ଲାଗିଚି,
ଗୋଟିକ ପରେ ଗୋଟିଏ ସୂର୍ଯ୍ୟ ଦୌଡ଼ିବାରେ ଲାଗିଚନ୍ତି,
ହର୍ବଲପୁରେ ଭାସୁଥିବା ଟ୍ରଲର୍‌ର ଆଲୁଅ
ବନ୍ଦୁଏ ରକ୍ତ ପରି ଦିଶୁଚି ।

( ପୁରୀ )

ସେ କ'ଣ ଫେରିପାଇ ପାରିବ ସମସ୍ତଙ୍କ ଆଗରୁ ?
ଭଙ୍ଗା ଘରର ଇଟା ପଥର ଫାଙ୍କରେ
ଝିଟିପିଟିର ଅଣ୍ଡା ଫୁଟିବାର ଅଛି ସେ,
ଆଖି ଖୋଲିବାର ଅଛି ସେ ବୁଢ଼ୀ ଭିକାରୁଣୀର ।

( ପାଞ୍ଚ )

# ତମେ କହୁଛ

ତମେ କହୁଚ ତମର ଡାହାଣ ହାତ କଚଟି
ଭାଙ୍ଗି ଯାଇଚ, ଏକ୍ସ-ରେ ଦରକାର,
ତମ ପାଖରେ ଟଙ୍କା ନାହିଁ,
ଡାକ୍ତର ଫେରାଇଦେଲେ ।
ତମେ ଯେହେତୁ କୁଆଡ଼େ କେମିତି ଯିବ ଜାଣିନଥିଲ
ଏଠିକି ଆମ ପାଖକୁ ଆସିଗଲ ।
ତମେ ବାଁ ହାତରେ ବଢ଼ାଇଥିବା କାଗଜ ଖଣ୍ଡିକରେ
ଏଇ କଥା ହିଁ ଲେଖା ହୋଇଚ ଇଂରାଜୀରେ ।

ଆମେ ତମକୁ ଫେରାଇଦେଇ ପାରିବୁ ନାହିଁ
ଏଇ କଥା କହି ଯେ
ଆମ ପାଖରେ ଆହୁରି ବେଶୀ ଶାଣିତ ଭାଷାମାନ ଅଛୁ,
ପ୍ରେମର, ତିରସ୍କାରର, ପ୍ରାର୍ଥନାର ।
ତମେ କ'ଣ ନିଶ୍ଚିତ ହୋଇ ସାରିଲଣି
ଭାଷା କିଛି କରିପାରେ ବୋଲି ?
ଆମେ ଶିଖିଚୁ ଚୁପ୍ ରହିବାର କୌଶଳ
ସାପ ମରିବ, ବାଡ଼ି ଭାଙ୍ଗିବ ନାହିଁ ।

( ଛଅ )

ତମେ ତମର କଚଟି ଗ୍ରଙ୍ଗି ଦେଇ;
ଆଜ କଏ ତା’ ଘର ଭସାଇଦେଇଚ ବନ୍ୟାରେ ।
ହୁସିଆରରେ ରଖ ତମ କାଗଜଖଣ୍ଡିକ,
ସେଇ ବାକ୍ୟଗୁଡ଼ିକ ଅଭ୍ୟାସ କର
ପାଣି ଝାଙ୍କି ତଳର ଅନ୍ଧାରରେ ।
ଅନେକ ଗଛ ଭାଙ୍ଗି ପଡ଼ିବାର ଅଛି,
ଅନେକ ହୃଦୟ,
ଅନେକ କବି ଜନ୍ମନେବାର ଅଛି,
ତମେ ଆମ ପାଖରୁ ବାହୁଡ଼ି ଯିବାପରେ ।

## ଭଞ୍ଜବିହାରରେ ବର୍ଷା

ନିଜ ଲୋକଙ୍କଠାରୁ ହଜିଯାଇଥିବାର ଅନୁଭବ ପରି
ଦମକାଏ ଥଣ୍ଡା ପବନ
ହଠାତ୍ କାନମୁଣ୍ଡା ଛୁଇଁ ବହିଯାଏ,
ଘଣ୍ଟେ ଅଥଚ ସେ ଘଣ୍ଟାଟାକୁ ସହ୍ୟଯାଇହୁଏ ।

ହେଲ୍ଥ ସେଣ୍ଟର୍ ଆଗର ଗଛଗୁଡ଼ାକର
ଛାଇ ତଳେ, ସାବୁନ୍ ଖୋଳ ଉଡ଼ି ଉଡ଼ି
କ୍ଷୀର ବିକସାରି ଫେରୁଥିବା ଟୋକାର ସାଇକେଲ୍ ଟ୍ରାଙ୍କ୍‌ରେ
ଗୁଞ୍ଜି ହୋଇ ମାଡ଼ିଯାଏ କୌତୁକରେ ।

ଆଉ ବ୍ଲକଶ୍ ଫର୍ମଶ୍ ଗାହୃଣ୍ଡ
ଆରେଇ ଯିବା ପରେ ଦେଖିବ ଆକାଶ
ହୋଇ ଉଠିଲାଣି
ବଜ୍ରବିଦ୍ୟୁତ୍ଇରମ୍ଭଦମସ୍ତୁ ।

ସବୁ କଥାର ଆରମ୍ଭ ଏମିତି ହୁଏ;
ତମେ ଗୋଟିଏ ଇଞ୍ଜିନ୍ ଷ୍ଟାର୍ଟ୍ କର ବା ପ୍ରେମରେ ପଡ଼,
ତାହା ଜଣା ବୋଲି କହି ହେଉ ନଥିବା

ଅସ୍ପଷ୍ଟ କମ୍ପନଟିଏ ସୃଷ୍ଟି ହେଲା ତ
ତମେ ଜମାଇ ସମସ୍ତ ଶକ୍ତି, ଆବେଗ
ଏକାକାର କରି ସଜାଗ ରଖିବ
ତମ ଭିତରର ସମସ୍ତ ଗନ୍ଧ ବର୍ଣ୍ଣ ଓ ଉପଚର୍ଯ୍ୟକାରେ ।

ସେ ବି ତ ଗୋଟାଏ ରକମର ଆତ୍ମସମର୍ପଣ,
ଅନିଶ୍ଚିତତା ଓ ଭୟ ଏତେ ବେଶୀ ଯେ
ତମେ ଭାବିବାକୁ ବାଧ୍ୟ ହୁଅ ଗୋଟାଏ ଖେଳ ଖେଳୁଛ ବୋଲି,
ସୁଯୋଗ ମିଳିଥିଲେ ହୁଏତ ତମେ
ଏଥି ବି କରିଥାନ୍ତ ଅନ୍ୟ କେଉଁଠି—
ପିମ୍ପୁଡ଼ି ଧାଡ଼ି ଉପରେ ଚନ ବନ୍ଧୁଥାନ୍ତ ।

ଟପ୍ ଟପ୍ ବର୍ଷା ଯେତେବେଳେ ପଡ଼ିବ,
ଛକୁଳପରି ଟକ୍ ଟକ୍ ଅସ୍ତ୍ର ଧରି ଯେତେବେଳେ
ଅକ୍ଷୌହିଣୀ ସୈନ୍ୟ ଓହ୍ଲାଇପଡ଼ିବେ ଆକାଶ ମାର୍ଗରୁ,
ବର୍ଷା ପରି ସର୍ବଦେଶୀ ନାଗର ଅଭିସମ୍ପାତ
ଯେତେବେଳେ କୁଦି ପଡ଼ୁଥିବ ତମ ଉପରକୁ,
ତମେ ଧାଇଁ ପଳାଇ ପାଇପାରିବ ନାହିଁ ।
ମୁଣ୍ଡ ତଳକୁ କରି ଜଙ୍ଗଲରେ ଆକ୍ରାମାକ୍ରା ହୋଇ
ତମେ ସେଇ ହସଟି ହସୁଥିବ ନିଜ ପାଇଁ,
ଗାଈଅଧର ଫସଲ ନଷ୍ଟ କରୁଥିବା ଜନ୍ତୁଙ୍କୁ ଗୁହ୍ନି
ପାଳଭୂତ ଯେଉଁ ହସଟି ହସୁଥାଏ ।

ଓଦାସରସର ହୋଇ, ଧୀରି ଧୀରି ପାଦ ଉଠାଇ
ତମେ ଶେଷରେ ପହଞ୍ଚିବ ଘରେ, ଶୁଣିବ
ଇସ୍, ଓଦା ହୋଇଗଲ ? ଛତା ଗଲନି କୋଉଠି ?

ଯେ ଛିପାଛି ହୋଇ
ଲୁଗାପଟା ବଦଳାଇ
ଚରମ କ୍ଷୀର ଗିଲାସ ମୁହଁକୁ ଠେଲୁ ଠେଲୁ
ତମେ ପୁଣି ନିଜକୁ ପ୍ରସ୍ତୁତ କରି ନେଉଥିବ
ଆହୁରି ଅନେକ ବର୍ଷା ପାଇଁ,
ପଚୁରୁଥିବ ନିଜକୁ
ଆଜି ସନ୍ଧ୍ୟାର ଏ ହନ୍ତସନ୍ତ ଅବସ୍ଥାର ସ୍ମୃତି,
ପର୍ବତ, ସାପ ଫଣା ଓ ଛତା
କ'ଣ ଯଥେଷ୍ଟ ସତର୍କତା ହେବ
ପରବର୍ତ୍ତୀ ସମସ୍ତ ପରାଜୟ ପାଇଁ ?

# ଇରାନ୍

ପ୍ରତ୍ୟେକଙ୍କ ଆଖିରେ ଅନ୍ଧପୁଟୁଳି ବାନ୍ଧି ଦିଆଗଲା,
ସତର ଜଣ ସେମାନେ,
ବାକୀତକ କାମ ଫାୟାରିଙ୍ଗ୍ ସ୍କ୍ୱାଡ୍‌ର,
ସତର ମିନିଟ୍ ବି ଲାଗିଲା ନାହିଁ ସାରିବାକୁ,
କାହାର ମୁଣ୍ଡ ଆଗକୁ ଝୁଲି ପଡ଼ିଲା ତ
କାହାର ରକ୍ତ ଉଚ୍ଛୁଳି ଉଠୁ ଉଠୁ
କ୍ଷଣକ ପାଇଁ ଅଟକିଗଲା ।

ଖଲବାଡ଼ ପ୍ରାନ୍ତର କଣ୍ଟାଟା ଦାୟମୁକ୍ତ ହୋଇଗଲେ ।
ଆଖିମାନେ ଜାଣନ୍ତି କେମିତି
ଗୋପନରେ ଲୁହ ବୁହାଇହୁଏ,
ଗୋପନରେ, ଅନ୍ୟାନ୍ୟ ଆଖିଙ୍କର ଅନ୍ତରାଳରେ ।
ଅନ୍ଧପୁଟୁଳି ଖୋଲି ଦେବା ପରେ ବି
ମାଟି ଆଉ ଶୁଖିଲା ନାହିଁ,
ଖାଲି ଗୋଟିଏ ଏକୁଟିଆ ପକ୍ଷୀ
ମାଡ଼ି ଚାଲିଗଲା ଜେଲ୍ ଅଗଣାର ଆକାଶ,
ସୂର୍ଯ୍ୟ ଗୋଟାଏ ନିସ୍ତେଜ ଘଣ୍ଟା ପରି ଝୁଲି ରହିଲା ।

ସେମାନଙ୍କ ଭିତରେ ଜଣେ କବି ଥିଲେ,
କେଉଁ ଅମରତ୍ୱର ସମ୍ଭାବନାରେ ସେ ବିଭୋର ଥିଲେ କେଜାଣି
ଆଉ ଅଧିକ କାଳ ବଞ୍ଚି ରହିବା
ମେ ସ୍ୱହାନ୍ତ ନାହିଁ କହୁଥିଲେ,
କିନ୍ତୁ ସେ ତାଙ୍କ ସହଚର ସହୋଦରଙ୍କ ହାତରେ
ଏମିତି ଖଣ୍ଡେ ଖଣ୍ଡେ ଜଆଁ ଧରାଇ ଦେଇଥିଲେ ଯେ
ସେମାନେ ବଞ୍ଚି ରହିବା ପାଇଁ ପ୍ରାଣପଣେ ଚେଷ୍ଟା କଲେ,
କବିର ମୃତ୍ୟୁ
ଗଛରୁ ଫଳ ଖସିବା ପରି ସ୍ୱାଭାବିକ ହେବ ବୋଲି ।

ଏଇ ନାଟକ ହାର୍ କିମ୍ବା ନାଟକ ନୁହେଁ,
କୌଣସି ବଗୁଲ୍ ବାଜିଲା ନାହିଁ,
ଉଡ଼ିଲା ନାହିଁ ବିଜୟର ନିଶାଣ,
ଅଦୃଶ୍ୟ ଦେବତା ଓ ମହାପୁରୁଷଙ୍କ ଗୋପନ କଥୋପକଥନ
ମେଘ ତଳେ ଯେମିତି ଛପି ରହିଲା ଆକାଶରେ,
ନଷ୍ଟହେ ଚ ଫିଙ୍ଗି ଥିବା ମୁଠା ମୁଠା ଧୂଳିର ଭିଡ଼'ରେ ।
ତେଣୁ ଏ ହାତ ସାମାନ୍ୟ ହଲଚଲ ହେଲା ।
ସେ ହାତ କ'ଣ ଭବଙ୍କର ?
ସେ ହାତ ଆଉ କୋଉ ଭାମର ନୁହେ ।

## ଛବି

(ଏକ)

କ୍ୟାନ୍‌ଭାସ୍‌ରେ ରଙ୍ଗ ଶୁଖି ଆସିଲେ
ରାତି ବେଶୀ ହେଲେ
ଗରୁଡ଼ ସ୍ତମ୍ଭ ମୂଳର ଦୀପସବୁ ଲିଭିଯାଏ,
ପୁରସ୍କାର ବିତରଣୀ ସଭା ସରିଯାଏ;
ଦୁଃଖ ବଢ଼ିଲେ
ଫରିଦାପରେ ଉଡ଼ିଯାଏ ପୋଷାପକ୍ଷୀଙ୍କ ପ୍ରତିଶ୍ରୁତି ।
ତେବେ ବି ଅପେକ୍ଷା ରହେ
କ'ଣ ଖାଲି ପୁନରାବୃତ୍ତିର ?

ଛବିଟି ସଂପୂର୍ଣ୍ଣ ହୁଏ
ସଂପୂର୍ଣ୍ଣ ହେବାକୁ ଥିବା ଛବିଟିର ଛବି;
ଦୀପଗୁଡ଼ିକ କେବଳ
ଭିନ୍ନ ଭିନ୍ନ ରଙ୍ଗ ବାରିବାରେ ଯାହା ସାହାଯ୍ୟ ହୁଏ;
ଅନ୍ଧାରକୁ ଫେରିବା
ଭୁଲ୍ କବାଟରେ ହାତ ମାରିବା ଯାଏଁ ସବୁ ଠିକ୍ ଥାଏ,
ତା'ପରେ ବୁଝେ ।

( ତେର )

(ଦୁଇ)

ଏଇ ରୋଡ୍ ଯେଉଁଠି ସରିଚି ସେଠି ସମୁଦ୍ର,
ଢଙ୍ଗ ବଦଳିଯାଏ ଗଛର
ଭାଷା ବଦଳିଯାଏ ସ୍ନେହର
ନିଜ ଲାଞ୍ଜକୁ କାମୁଡ଼ି ଧରିଥିବା ମାଛର
ଦୃଶ୍ୟ ଥରେ ଦେଖିନେଲେ ହିଁ ଆଶ୍ଚର୍ଯ୍ୟ ବିହ୍ୱଳତା...

ନିର୍ଜନ ବାଲିବନ୍ତର ଆଡ଼ୁଆଳକୁ ଅପସରିଯିବା
ମାଛପରି ପେଟରେ ଘୁଲିବା
ଶିଶୁଙ୍କ ଭଳି ହାତଗୋଡ଼ ଛଟିବା
ହାସ୍ୟକର,
ପାଣିରେ ଫିଙ୍ଗିଦେବା ଆବଶ୍ୟକ
ସକଳ ପୁରସ୍କାର ।

# ଆବିଷ୍କାର

ସେ ସବୁବେଳେ କହନ୍ତି
ତାଙ୍କର ଗୋଟିଏ ସ୍ୱପ୍ନ ଅଛି,
ଦାବୀ କରନ୍ତି ସ୍ୱପ୍ନଟି ଅତି ନିଜର,
କିନ୍ତୁ ତାଙ୍କ ନିଜ ଫ୍ୟାକ୍ଟ୍ରି ତିଆରି ଡଙ୍ଗା ନୁହେଁ,
ଯାହାକୁ ସେ ଫୁଲ ସିନ୍ଦୂର ଲଗାଇ
ଭସାଇଦେଇ ପାରିବେ ଆଲୁଅରେ,
ବରଂ ତା' ନଡ଼ିଆ ପଟେ ବା ଶୁଖିଲା କାଠଖଣ୍ଡେ
ଯାହାକୁ ଉଦ୍ଧାର କରିବାକୁ ପଡ଼ିବ
ଅନ୍ଧାରର ପାଣିରୁ ।

ଆମର ବି ଗୋଟିଏ ସ୍ୱପ୍ନ ଅଛି
ଏବଂ ଯେହେତୁ ଆମେ
ତାଙ୍କ ଭଳି ମନୁଆ ଓ ସାରବାର ନୋହୁଁ,
ଆମ ସ୍ୱପ୍ନଟି ନିହାତି ସରଳ ।
ତାଙ୍କର ସ୍ୱପ୍ନ ଆମେ ବୁଝିବାପାଇଁ
ଚେଷ୍ଟାକରୁ କେବଳ,
ସତେ ଅବା ବୁଲୁଛୁ ସୁରକ୍ଷିତ ବାଗାନ୍‌ରେ

( ସନ୍ଦର )

ଦେଖିବୁ ଅଶ୍ରୁତ ଗୋପନ
ବଜ୍ରପାତର କାଣ୍ଡ କାରଖାନା,
ଭଙ୍ଗା ଦରପୋଡ଼ା ଡାଳଙ୍କ ଅଧଃପତନ ।

ସେ ତାଙ୍କ ବସିବା ଜାଗାରୁ
ଉଠିବେ ନାହିଁ, ଚଙ୍କିବେ ନାହିଁ ।
ପାଣିକାନ୍ଦାଖିଆ ହାତରେ ଦଉଡ଼ି ଟାଣି ଟାଣି
ଆମେ ଆମକୁ ରକ୍ଷା କରିବାକୁ ପଡ଼ିବ
ମଗରଙ୍କ କବଳରୁ,
ଯେଉଁଠି ଦରକାର
ଜଣେ ଅଧେକୁ ଫିଙ୍ଗିଦେଇ ପାଣିକି;
ଆମେ ଫେରିବୁ
ଭଙ୍ଗା କାଦୁଅରେ ଝଡ଼ର ଜଠରରୁ,
ଆମେ ଫେରିବୁ
ଅନେକ ଭୟ ନେଇ, ସ୍ମୃତି ନେଇ
ଅପରିଚିତ ମାଟିର,
ମସୃଣପୁଚ୍ଛ ପରି ଯା' ବସ୍ତୃତ ।

ନାନା ଉଦ୍‌ବେଗରେ ତା'ପରେ
ଆମ ଅଗଣା ଭର୍ତ୍ତି ହୋଇଯିବ;
ତାଙ୍କର ସୌହାର୍ଦ୍ଦ୍ୟକୁ ସନ୍ଦେହ କରିବସିବୁ,
ଆମ କଥାବାର୍ତ୍ତାର କୁହୁଡ଼
ଘୋଡ଼ାଇଦେବ ମାନଚିତ୍ରକୁ ।
ପୁଣି କ'ଣ ଆମେ
ମଙ୍ଗ ମୋଡ଼ିବୁ ନୌକାର ?

( ଷୋଡ଼ଶ )

ଆମ ଆଗରୁ ସେ
ଝଣ୍ଡ ସାରିଥିବେ ଦ୍ୱୀପରେ ।
ଆମ ଉଦ୍ୟତ ହାତର
କୋଡ଼ କୋଦାଳ ଆଗରେ
ବନ୍ଧୁକ ଫୁଟାଇ ସେ
ଖସାଇ ଦେବେ ପକ୍ଷୀଟିଏ,
ଆମ ସମୁଦାୟ ଚେଷ୍ଟାର
ଏକମାତ୍ର ପୁରସ୍କାର ପରି ।

( ସତର )

## କିଏ ଜଣେ

କବିତ୍ୱର ଘୁପିଘୁପିକା ଅନ୍ଧାରରେ
କିଏ ଜଣେ ଆସୁଥିବାର ଶବ୍ଦ;
କିଏ ଜଣେ ଆସୁଥିବାର ସ୍ୱପ୍ନରେ ମୋର
ଘୁପିଘୁପିକା ଅନ୍ଧାର ବୋଳହୋଇ
କବିତ୍ୱଟେ ହଠାତ୍ ଠିଆ ହୋଇଗଲଣି ।
ମୁଁ ଖାଲି କବିତ୍ୱକୁ ଲେଖେ ସିନା
ଲେଖେନାହିଁ ଲୁଚିଛପି ଆସୁଥିବା ଲୋକକୁ ।

ମୁଁ ଲେଖିପାରେନ ତା'ର ହସକୁ,
ବୁଝିପାରେନ ତା'ର ସମ୍ଭାଷଣର ଶୈଳୀ,
ଦେଖିପାରେନ ତା' ଆଖିର ଗହ୍ୱରରୁ
ଝଲକି ଉଠି ଆସୁଥିବା ଆଲୋକ ବନ୍ୟାକୁ;
ଭିତରକୁ ଡାକେନ, ଚୌକି ବି' ଦେନ ।
ତେବେ ମୁଁ ତାକୁ ପଚାରେନ ନିଶ୍ଚୟ
ସେ କ'ଣ ସେଇ ଲୋକ ଘୁପିଘୁପିକା ଅନ୍ଧାରରୁ

ଯେଯାଏଁ ଉଠି ଆସୁଛି, କୋଉଠି ଅଟକ
ଫୁଲ ତୋଳୁଛି, ଆଉଁଷୁଛି ଗଛଙ୍କ ପିଠି,

ତଳେଚକଟି ନଷ୍ଟ, କରୁଣ ସ୍ବଗ,
ସକାଣ୍ଡ ଧରୁଣ ଚୂର୍ଣ ହାତମୁଠାରେ,
ସନ୍ଦେହ କରୁଣ ଭୁଲ୍ ହୋଇଥାଇପାରେ ?
ଆଜ୍ କଣ୍ଟଢ କାଲି ଥରଟେ ଆସନ୍ତେନ,
ମୋ ସ୍ବପ୍ନ ଯେ ପୂର୍ଣ ଏପାଏଁ ଗଢ଼ା ହୋଇନ ।

କେବେ ହେନେ ମୋ' ସ୍ବପ୍ନ ପୂର୍ଣ ହୋଇଯିବ,
ଲୋକଟି ଉଠିଆସିବ ପାହାଚ ଚଢ଼ି,
ହାତମାରିବ କବାଟରେ, ଆଲୁଅ ନଥିବ,
ମୁଁ ବି କାହାକୁ ଅପେକ୍ଷା କରିନଥିବି—
ନିଦ ବାଉଳାରେ କବାଟ ଖୋଲିଦେଇ
ମୁଁ ତାକୁ ଆଡ଼େଇ ହୋଇ ଚାଲିଯିବି ବଗିଚାକୁ,
ସେ ଭିତରକୁ ପଶି ଶୋଇଯିବ ମୋ' ଶେଯରେ ।

( ଭୁବନେଶ୍ବର )

ଏବେ ସ୍ମୃତିର ଦେଶ ନେଣର ଶାଳ ଯେ
ମନେ ଉଦ୍ରେକ କ'ଣ ଗଲା, କ'ଣ ଆସିଲା,
ମୁଁ ରଖିଲାବେଳକୁ ବାଉ,
ଆଉ ପିଏ ରଖିଲା ତେଉ !
ବଳଯାଇଥିବା ଗୋଟିଏ କୌତୁକରେ ଟିକଏ
ତରଖାଣେଲ, ତରଖଣ୍ଡିଆ ହୋଇ ଫେରେ,
ତୁ ମୁଁ ଲୁଚିଲୁଚି ଭୁଲିଯାଇ
ପୋଲ ଉପରେ ବସି ଖୁସିରେ ଦେଖୁଥିବାବେଳେ ।

( ଏକୋଇଶି )

# ଉଦ୍ୟାନ ରକ୍ଷକର ଗୀତ

ମତେ ତାଗିଦ୍ କରଦ୍ଧଆଯାଇଚ
ଫୁଲ୍ କେହି ତୋଳିବେ ନାହିଁ ଯେମିତି,
ଫଳ କେହି ପାରିବେ ନାହିଁ ଯେମିତି,
ଗେଟ୍ ଖୋଲି ପଶି ଆସିବ ନାହିଁ ଯେମିତି
କୌଣସି ଅଭିସାର,
କୌଣସି ଗନ୍ଧ ମନ୍ତ୍ରି ନ ହୋଇଯାଏ ଯେମିତି,
ଉପଶମ ନ ହୋଇଯାଏ କୌଣସି କ୍ଷୁଧାର ।

ମୁଁ ନାସ୍ତର, ପରବନରେ ବଳୟାର,
ସାବଧାନରେ ଗେଟ୍ ଖୋଲେ, ବନ୍ଦ୍ କରେ,
ବଗିଚ୍ଛର ଚତୁର୍ଦ୍ଦିଗ ଘେରାଏ ମାରିଦେଇ ଫେରେ,
ସୂର୍ଯ୍ୟ ଯେତେବେଳେ ବାହୁଡ଼ିଥାଏ ନିଜ ରକ୍ତକୁ;
କଠୋର ଦାୟିତ୍ୱରୁ ଟେକାଏ ଗିଳିଦେଇ ମୁଁ ଶୋଇଯାଏ,
ଅନେକ ଅନେକ ଡେରିଅଛି ତ ନସ୍ତାର ପାଇଁ ।

ନସ୍ତାର ନାହିଁ ନଦୀରେ ବି ।
କୌଣସି ହାତ ଟେକା ଫିଙ୍ଗିଲି ତ ହେଇ

( ବାଇଶି )

ଖସ୍ ଖସ୍ ଶବ୍ଦ ଶୁଭିଲା
ଶୁଖିଲା ପତ୍ର ଉପରେ ନୈଋତ କୋଣରେ;
କଳାଙ୍ଗର ମୁହଁ ପରି ମୁହଁଟିଏ
ଡପଡକନା ଜଳଜଳି ଅନ୍ଧାରରେ
ନଭିଗଲା ଐଶାନ୍ୟରେ ତ
ଥଣ୍ଡା ପବନର ସୁଅ ଆସି ଘେରିଗଲାଣି ମୋତେ;
ମୁଁ କେବେ ଶିଖି ପାରିନି
ଏ ସବୁଙ୍କୁ ବଶ କରିନେବାର ଉପାୟ ।

ମୋର ଜ୍ଞାତ କୁଟୁମ୍ବ ସଂସାର ବୋଲି କେହି ନାହିଁ,
ବାଣ୍ଟିବାଲାଗି ଦରକାର ଅନ୍ତନସ୍ପୃମ ସେତେକ
ମତେ ଯୋଗାଇ ଦିଆଯାଇଥାଏ
ଗଛ ବଢ଼ିବାର, ଫୁଲ ଫୁଟିବାର, ପକ୍ଷି ଧରିବାର ଫିକା ଫିକା ଶବ୍ଦରେ,
ବେଶ୍ ସମର୍ଥ ସେ ଶବ୍ଦଗୁଡ଼ିକ
ପାଣିପବନ ଘଉଡ଼ାଇ ନେଇପାରେନା ପରିଧି ବାହାରକୁ ।

ମୋର ବନ୍ଧୁ କହିଲେ କେବଳ ସେମାନେ
ଯେଉଁମାନେ ଭାସି ଆସିଥିଲେ
ମୋର ଆଗରେ ପଛରେ
ଅନ୍ଧାରର ସମୁଦ୍ରରେ;
ସେମାନେ କେତେଜଣ ମୁଁ ଜାଣେ ନାହିଁ,
ଶୁଣିଚି ତିନିଜଣ ବୋଲି ।
ଅନେକ ସମୟରେ ମୋର ଭ୍ରମ ହୁଏ
ମୁଁ ବି ସେଇ ତିନିଜଣଙ୍କ ଭିତରୁ ଜଣେ ।
କେଉଁ ଆଶ୍ଚର୍ଯ୍ୟ ନକ୍ଷତ୍ର ମୋର ହାତଧରି କେବେ

( କ୍ରମଶଃ )

ବାଟ କଡ଼ାଇ ନେଉଥିବା ବେଳେ
ମୁଁ ଯେବ ଭୁଲିଯାଏ ମୋ' ନିଜକୁ
ସେ ଦୁର୍ବହ ମଧ୍ୟ ନଥାନ୍ତି ।
କିନ୍ତୁ ଆଜିକାଲି
ମୁଁ ପ୍ରାପ୍ତ କେବେ ନିଜକୁ ହଜାଇଦେଇ ପାରୁନାହିଁ ।

କାରଣ ଏଠି ବସନ୍ତଋତୁ ଶରକାଳ
କାରଣ ଏଠି ପତ୍ର ପୁଷ୍ପ ଫଳ ଶରକାଳ
କାରଣ ଏଠି ଭ୍ରମରର ଗୁଞ୍ଜନ ଶରକାଳ
କାରଣ ଏଠି ରକ୍ତର ବିପୁଳ ସ୍ୱପ୍ନ ଶରକାଳ
କାରଣ ଏଠି ମାଂସର ଊର୍ଦ୍ଧ୍ୱଗମନ ଶରକାଳ
କାରଣ ଏଠି ଅସ୍ଥିର ପ୍ରସନ୍ନ ଗନ୍ଧ ଶରକାଳ
କାରଣ ଏଠି ଏଇ ବଗିଚ୍ଚାରେ
ମୁଁ କବର ଦେଇଛି ମୋର ମୃତ ବନ୍ଧୁକୁ ।

ଅନ୍ୟ ଜଣକର ନିବାସ
କଆବଣ ସେପାଖ ଗାଆଁରେ,
ଘସାଗ୍ୱ, ପୂଜକଳହ ଅନେକ ଅନେକ,
ତୋପ କମାଣ ଫୁଟିଲେ ଯାଇ ତା'ର ନିଦ ଭୁଏ ।
ସାରା ଖରାବେଳଯାକ ବଂଶୀ ବଜାଇ ବଜାଇ
ମୁଁ ତା'ର ଅପେକ୍ଷାରେ ରହିଛି ଏତେଦିନ,
ସେ କ'ଣ କେବେ ଆସିବ ?
କାହିଁକି ବା ଆସିବ ?
ଆମେ କ'ଣ ଯାଇ ବସି ପାରିବୁ,
ଆମ ଘରଧି, ଘରଚପୁ ବାହାର ସମୁଦ୍ରରେ ?

( ଚବଣି )

# ବସନ୍ତ ଋତୁ

( ଏକ )

ଗଲା ବସନ୍ତ ଋତୁରେ ପର୍ବତ ଉପରୁ
ଉପଦେଶ ଆସିଥିଲା ।
ବାପାଙ୍କର ଦୁର୍ଯୋଗ ଘଟିଥିଲା ମାସେ ଦି’ମାସ ଆଗରୁ,
ଦୋଳଯାତ୍ରାର ଦୋକାନୀ
ଫମ୍ପା ଟିଣ ବାକ୍ସ ଉପରେ ସଜାଇ ରଖିଥିବା
ସବୁଠୁ ବଡ଼ ଦର୍ପଣଟି ପରି ଦିଶିଥିଲା
ତାଙ୍କର ଗୋରା ତକ୍ ତକ୍ ମୁହଁ,
ସେ ଯେମିତି ଛ’ଖଣ୍ଡି କାଠ ଉପରକୁ ଉଠିଗଲେ ।

ଗଲା ବସନ୍ତ ଋତୁରେ
ଅନ୍ୟମାନେ ପୁରସ୍କୃତ ହୋଇଥିଲେ ବଜାର ଛକରେ;
ବ୍ରିଜ୍ ଉପର ସାରା ଶୁଭିଥିଲା
ନିନ୍ଦୁକମାନଙ୍କର ମୃଦଙ୍ଗ ।

( ଦୁଇ )

କେଉଁ ଯୋଡ଼ାଏ ଶିରାଳ ତୃଷାର୍ତ୍ତ ପାପୁଲି
ପାଣି ମାଗୁଚି ମାଗୁ ଆଜି,

ଉତବାସିମ୍ନା ବେଶ୍ୟାର କଳସ ଏବେ
ଡାଳବାରେ ଲଗିଚ, ଆଜ
ଫସାରଯାକର ଶୋଷ ମେଣ୍ଟିଯିବ ।
ଗ୍ଲାନ, ଅନୁଶୋଚନା ବାହୁଡ଼ ଆସିବେ
ପ୍ରିୟଜନଙ୍କ ପର,
ଅପ୍ରାପ୍ତବକ ଦୂର ଗମନରୁ ।
ଝଡ଼ା ପତ୍ରଙ୍କ ସ୍ମୃତିରେ
ଚଞ୍ଚଳଟା ସମୃଦ୍ଧ ହୋଇ ଉଠିବେ,
ଅଧିକ ସମର୍ଥ ହେବେ ଉଈ ଏବଂ
ଦାସକାଠିଆମାନଙ୍କ ଆଙ୍ଗୁଠି,
ପକ୍ଷୀମାନେ ହାଲ୍‌କା ହୋଇ ଭସିବେ ଲଲ୍ ପବନରେ ।

( ତନ )

"ସେ ଭାରି ଭଲ ଲୋକ ଥିଲା,
ସାଧାସିଧା, ମାଛିକ ମ' କଷ୍ଟ ନଥିଲା ।
ଖରବେଳେ ଯିଏ ଯା' କାମକୁ ବାହାରିଗଲେ
ଆମ୍ବତୋଟାରେ ପଶି ସେ ବଂଶୀ ବଜାଉଥିଲା,
ଭୋକଶୋଷ କ ଖରାତରା ମାନୁ ନଥିଲା ।
କାଲି ସଞ୍ଜ ପହରୁ ତୋଟାର ମଞ୍ଚାରେ ଯାଇ ଶୋଇଥିଲା,
ଆଜ ସକାଳୁ ତା' ସ୍ତ୍ରୀ ଯାଇ
ଯେତେ ଉଠେଇଲା ସେ ଉଠିଲା ନାହିଁ, ଚହିଁଲା ନାହିଁ ।
କୋଉ ଡାହାଣୀ ତା'ର ରକ୍ତ ଶୋଷି ନେଲା କେଜାଣି !
ପଞ୍ଚ ଗୋଟେଇ ଝିଅମାନେ
ବନ୍ଧୁ କରିଦେଲେ ଗାଁରେ ।
କ ହାଉଳ ଖାଇ କାନ୍ଦୁଥିଲା ଯେ ସ୍ତ୍ରୀଲୋକଟା !"

( ଚବଣ )

(ସ୍ମୃତି)

ଜମ ଫୁଲର ବାସ୍ନା ମତେ ଗୋଡାଏ ସାତ ଘର ।

ସବୁ ଢ଼କମର ସତର୍କବାଣୀ ମୁଁ ଭୁଲିଯାଇଛି,
ଭୁଲିଯାଇଛି ସବୁ ରକମର ଉପଦେଶ,
ଭୁଲିଯାଇଛି ପ୍ରାର୍ଥନା, ନେତୃତ୍ୱ ହୋଇ କହିବାର କୌଶଳ,
ଭୁଲିଯାଇଛି ଆଦେଶ କେମିତି ଦିଆଯାଏ,
ଭୁଲିଯାଇଛି କାନ୍ଥରେ କବାଟ ଠେଲି ଧରି କେମିତି
ଅଟକାଇ ଦେଇ ହୁଏ ବଢ଼ିପାଣିର ସୁଅକୁ,
ଭୁଲିଯାଇଛି ଅସ୍ତ୍ରକୁ କେମିତି ଶାଣ କରାଯାଏ ।

ତଥାପି ମୁଁ ଟିକିଏ ଚେଷ୍ଟା କରିପାରେ କି,
କହିପାରେ କି ଉଠ୍ ଉଠ୍ ବୋଲି ?
ପାନଛେପରେ ଅସନା ଖିଡ଼କି ଫାଙ୍କରୁ
ଦେଖିପାରେ କି ଥରଟେ
ଚୁଲୁରାଜିଙ୍କ ଝୁଲ୍ ଝୁଲ୍ ଝୁଲି ?

( ସଚେଇଶ )

## ଗେଷ୍ଟ ହାଉସ୍

ଆଗରେ ମୁଣ୍ଡିଆ ଉପରେ ଗେଷ୍ଟ୍ ହାଉସ୍,
ଆଜ ସନ୍ଧ୍ୟା ଟ୍ରେନ୍‌ରେ ସେ ଆସିଥିବେ,
ଅପେକ୍ଷା କରି ବସିଥିବେ ତାଙ୍କ ରୁମ୍‌ରେ ।

ମେଘୁଆ ରାତିର ଅନ୍ଧାର ଚତୁର୍ଦ୍ଦିଗରେ,
ଟର୍ଚ୍ଚଟା ନଆଣି ଭୁଲ୍ ହେଲା,
ଘରୁ ଥରେ ବାହାରିଲେ
କେତେବେଳେ କୋଉ ବିପଦ କିଏ ଜାଣିଛି !

ଗେଟ୍ କଡ଼ର ବୁଦାମୂଳରେ ପେନ୍‌ସିଲ୍ ଟର୍ଚ୍ଚ
ଜଳୁଥାଏ ଲିଭୁଥାଏ କାହା ଅଦୃଶ୍ୟ ହାତରେ,
ଦମକାଏ ଥଣ୍ଡାପବନ ବୋହିଯିବାରୁ ସେ ଦୁଞ୍ଝିଗଲା
ଆଉ ଟିକିଏ ଭିତରକୁ, ଲୁଚିଗଲା ।

କିଏ ସେଠି ? ତମେ କ'ଣ ସେ ଗୁପ୍ତଚର ଯିଏ
ନିରବଧି ମତେ ଲକ୍ଷ୍ୟ କରିବାରେ ଲାଗିଛ
ଆକାଂକ୍ଷାର ଉତ୍ସ ଖୋଜି ଖୋଜି ମୁଁ ବୁଲୁଥିଲା ବେଳେ ?

( ଅନ୍ୱେଷଣ )

ତମେ କ'ଣ ନିଶ୍ଚିତ ଯେ ( କେମିତି ବା ! )
ନିଶ୍ଚିତ ଯେ କଦାପି ଧରା ପଡ଼ିଯିବ ନାହିଁ
ନିଜେ ନିଜର ଆଲୁଅରେ ?

ବୋଧେ ମୋ ବନ୍ଧୁ ଆଜି ଆସିପାରିନାହାନ୍ତି ।
ମୋ' ନିଜର ବୋଲି କୌଣସି ଆଲୁଅ ନାହିଁ ।
ଅନେକ ଦିନ ଆଗରୁ ମୁଁ ଧରାପଡ଼ି ସାରିଛି
ଭୁଲ୍ ଭାଲ୍ ସମ୍ଭାବନାଙ୍କ ସୁଡ଼ଙ୍ଗ ମୁହଁରେ ।

( ଅଣତରଣ )

## ଶବ୍ଦାନ୍ତର

ତମେ ଯେତେବେଳେ କ'ଣ ଭାବୁଚ, କ'ଣ କରୁଚ
ତା' ଉପରେ ନିର୍ଭର କରେ
ଶବ୍ଦଟି କି ଭଳି ଶୁଭିବ,
କିନ୍ତୁ ଶବ୍ଦଟି ଯେ ପବନରେ ଭାସି ଆସୁଥିବ ତା' ସତ ।
ଅନେକ ବର୍ଷୁଁ ପାଶୋର ଯାଇଥିବା ଆକାଂକ୍ଷାକୁ
ତମ ଆଡ଼କୁ ମୁହାଁଇ ଥିବା
ତମେ ହୁଏତ ଦେଖୁଥିବ ଉଜ୍ଜ୍ୱଳ, ଉଦ୍‌ଗ୍ରୀବ ଆଖିରେ,
କିମ୍ବା ହଠାତ୍ ଅଦରକାଞ୍ଚି ହୋଇ ପଡ଼ୁଥିବା ପ୍ରଶ୍ନକୁ
ଘୋରି ଘୋରି ଧାରୁଆ କରୁଥିବ,
ଶବ୍ଦଟି ଶୁଭିବ, ତମେ ଝାଣି ହୋଇଯିବ,
ସଦ୍ୟ ପଡ଼ୁଥିବା ବର୍ଷା ପାଣି
କ'ଣ କରିବ କ'ଣ କରିବ ହେଉ ହେଉ
ଟାଙ୍ଗାଣିଟିଏ ପାଇଗଲେ ଯେମିତି ।

ତମେ ଯଦି ଘର ଜଞ୍ଜାଳରେ ବ୍ୟସ୍ତ ଅଛ
ଶବ୍ଦଟି ବଂଶୀସ୍ୱନ ପରି ଶୁଭିବ,
ତମେ ଯଦି ବାପାଙ୍କ ଶବ ଦାହ ସାରି ଫେରୁଚ
ଜାନୁଆରିର ଶୀତ ସଞ୍ଜରେ ଥରି ଥରି
ଦାଣ୍ଡରୁ ହିଁ ଶୁଭିବ ଘର ଭିତରର କୁଆଁ କୁଆଁ ରବ,

( ତିରିଶ )

ତମର ସ୍ୱ ଅର୍ଜିତ ସୁଖ ବୋଲି ଭାବ ରଖିପାର
ତମେ ଯନ୍ତ୍ର ଆଲମାରିରେ ଶବ୍ଦ ଦେବାକୁ ଯାଉଚ,
ବହୁ ଦୂରରେ ଗୋଟାଏ ଶୋଭାଯାତ୍ରା ଗଲାଥିବା ଭଳି ଶୁଭିବ,
ତମେ ବାଧ୍ୟ, କାନ ପାତି ଶୁଣିବ ।

ସେ ଶବ୍ଦ ନା ଜନ୍ମର ନା ମୃତ୍ୟୁର ।
ସେଥିପାଇଁ ଗଧାର ଲଙ୍ଗଳା ମୁକୁଳା ହୋଇ
ଧାଇଁବା ମାପ ମୂଳକୁ ଅବାନ୍ତର ।
ସେତକ ଅନାବଶ୍ୟକ ଅଫିମ ଭର୍ତ୍ତି ବାକ୍ସକୁ
ମୋର ନୁହେଁ ବୋଲି କହିଦେବା ଟ୍ରେନ୍‌ରେ
ଯାଞ୍ଚ୍ କରିବାର ଅଫିସରମାନଙ୍କୁ ।
ମନେରଖ
ଥରେ ବାହାରିଗଲେ ଆଉ ବାହୁଡ଼ିବାର ନାହିଁ
ସବୁ ମିଛ ମାନ ଅଭିମାନ
ଅହଙ୍କାର ଅନୁତାପର ଏନ୍ତୁଡ଼ିଶାଳକୁ ।

ଭଲ କରିଚ, ଭୁଲିଯାଇଚ ସେ ଶବ୍ଦଟିକୁ,
କୌଣସି ଛୁଟି ଦିନ ଅପରାହ୍ନର ଆକାଶରୁ ଯା' ଆସିଥିଲା
କୌଣସି ଚଢ଼େଇର ଡାକ ପରି ।
ସେ ଶବ୍ଦ ତମେ ଆହୁରି ଅନେକ ଥର ଶୁଣିବ
ସବୁ କାମ ସାରିଦେଇ
କଂସା କବାଟରେ ଯାଇ ହାତ ବାଡ଼େଇବା ପାଇଁ,
ମୁଁ ଆସିଚି ମୁଁ ବୋଲି ପାଟି କରିବା ପାଇଁ;
ଏବଂ କବାଟ ଖୋଲିଯିବ ତମର ଆଦେଶରେ, ନିଃଶବ୍ଦରେ ।

# ଖେଳ

ସେ ଖେଳ ଆଜ ଖେଳ ହେଲା ନାହିଁ ।
ଟେଲିଫୋନ୍ ରିସିଭର୍ ଆସୁ ଉଠିଆସି ବାରନ୍ଦାକୁ,
ସକାଳ ଗ୍ୟାଁଖିଆ ଝିଙ୍କା ପାଖକୁ
କହିଥିଲା,
ପଞ୍ଜୁରୀର ଶୁଆ ବି ପ୍ରବର୍ତ୍ତାଇ ଥିଲା,
ମଧ୍ୟ ପ୍ରାଚ୍ୟରୁ ସଫଳକାମ ହୋଇ ଫେରି ଆସିଥିବା
ବାଳକ ମିସ୍ତ୍ରୀ ଚିହ୍ନାଇଥିଲା ଖେଳ୍ ଖେଳ୍ ବୋଲି ।
ସେ ଖେଳ କିନ୍ତୁ ଆଜ ଖେଳ ହେଲା ନାହିଁ ।

ଘର ଉପରୁ ବାଲ୍‌କନିରୁ ଅନାଇଥିଲେ ଲୋକେ,
ସାରା ଦେଶର ସ୍କୁଲ କଲେଜ୍ ଅଫିସ୍ ଛୁଟି କରିଦିଆ ଯାଇଥିଲା;
ମନ୍ତ୍ରୀ, ମହାତ୍ମାମାନଙ୍କ ବେତାର ବାର୍ତ୍ତା ଓ ଆଶୀର୍ବାଦ,
ବହୁବାର କବାଟ ବାଡ଼େଇବା ପରେ
ଝରକା ଅଳ୍ପ ଖୋଲିକରି ସେ କହିଦେଲା
ପରେ ଆସ, ଅନ୍ୟ ଲୋକ ଅଛନ୍ତି ।

ସେ ଖେଳ ଆଜ ଖେଳ ଆସିଲା ନାହିଁ,
ଯେତେ ଅଣ୍ଡାଳି ହେଲା ପଛକେ ହାତ
ଖୋଜିଣି ପାଇଲା ନାହିଁ ଅନ୍ଧାର ।

( ବହିଣ )

ମେଘମାଳା ଏପଟ ସେପଟ ହୋଇ ବୁଲିଲେ,
ସେମିତି ଥମ୍ ଥମ୍ ହୋଇ ରହିଲା ଆକାଶ,
ଦର୍ଶନ ମିଳିଲା ନାହିଁ ବାବାଙ୍କର, ସୀତାଙ୍କୁ ଠାବ କରି ହେଲା ନାହିଁ;
ଆଖି କାନ ନାକରୁ ଉଦ୍ଭୁକ୍ତି ଉଠିଥିବା ଫୁଲଗଛର ସ୍ୱପ୍ନ
ସେଇଠି ଝାଉଁଳି ଗଲେ । ନା, ନା, ସ୍ୱେଚ୍ଛାଚାରୀ ଶାସକକୁ
ସତର୍କ କରାଇ ହେଲା ନାହିଁ;
ଝିଅକୁ ଆଜି ସ୍କୁଲ୍ ପଠାଇ ହେଲା ନାହିଁ,
ଅଧ ବୋତଲେ ରକ୍ତ ଦେଇ ହେଲାନି ମୁମୂର୍ଷୁକୁ କ
ବାହୁଡ଼ି ଆସି ହେଲା ନାହିଁ ତା' ବନ୍ଦ୍ କବାଟ ପାଖକୁ ।

ଗାରାଜ୍‌ର ଅସନା ପରିତ୍ୟକ୍ତ କୋଣରେ
ମୁହଁ ମାଡ଼ି ପଡ଼ିଥିବା ଯୋଡ଼ାଏ ଭଙ୍ଗାଗାଡ଼ି ମଝିରେ
ଦୁବ ଖୁଣ୍ଟି ଖାଉଥିବା ଗାଈଟି ଏମିତି ମତେ
ଟାଣି ଆଣୁଥାଏ ମୋ' ପାଖକୁ,
ପ୍ରଚଣ୍ଡ ସୂର୍ଯ୍ୟାଲୋକରୁ ବୁଦୁବୁଦୁକିଆ ଜଙ୍ଗଲକୁ
ଦୌଡ଼ି ପଳାଉଥିବା ଠେକୁଆ ଏମିତି ମତେ
ଏକୁଟିଆ ଠିଆ କରାଇ ଦେଉଥାଏ ଦର୍ଶକ ଭୂମିକାରେ,
ମୋ ନିଜ ରକ୍ତ ମାଂସ ଚମର କାନ୍ଥ କଡ଼ରେ;
ସଦ୍ୟ ଡାକରେ ଆସିଥିବା ଲଫାପାରୁ ବାହାରିପଡ଼ି
ଖାଲି କାଗଜ ଖଣ୍ଡିକ ମତେ କଲମ କରି ଚାଲିଏ ।

ଥରେ ଖେଳ ସାରିଥିବା ଖେଳ ବୋଧେ
ଆଉ ଖେଳି ହୁଏ ନାହିଁ;
ନା ଖେଳ ଖେଳି ହେଲା ନା ନିଷ୍କର୍ମୀ ଏଇ ସମୟର
ଜମି ଖଣ୍ଡିକ ଟେକି ଦେଇହେଲା
ଅପେକ୍ଷାରତ ବାମନର ହାତକୁ ।

( ତେହିଶ )

## ସର୍ତ୍ତ

ଅନ୍ୟ କୌଣସି ସର୍ତ୍ତରେ
ଏ ମନ ଭୁଟିନାହିଁ, ଭୁଟିବ ନାହିଁ ।
ମୋ' ହତ୍‌ବଳସ୍ତୁକୁ ଆସିବ ତ ସୂର୍ଯ୍ୟ ହୋଇ ଆସ
ନହେଲେ ପଙ୍କରେ ଲୋଟି ପଡ଼ିଥାଉ ମୋ' ସନ୍ଧି ଓ ସମାସ ।

ଅନ୍ୟ କୌଣସି ସର୍ତ୍ତରେ
ଏ ନୌକା ଚଳିନାହିଁ, ଚଳିବ ନାହିଁ;
ଯଦି ମୋ' ବାହୁବେଷ୍ଟନୀକୁ ଆସିବ ରକ୍ତ ହୋଇ ଆସ,
ବର୍ଷା ରାତିର ଅନ୍ତିମ ବାଟୋଇ ପରି ଆସ, ମୁଁ ପାର୍ କରିଦେବି ।

ଧାନ ଆଞ୍ଜୁଳା ଟେକି ମୁଁ ଅନେକ ବେଳୁ ଠିଆ ହେଲିଣି,
ମୋ' ଆଖିରୁ ଅନ୍ଧାରପଟି ଖୋଲିଦିଅ ମୁଁ ଦେଖିନିଏ
କେଉଁ କ୍ଷେତର ଆଗ୍ରହ କେଉଁପରି, କେଉଁ ମୁହୂର୍ତ୍ତର ।

ଏମିତି ରାତି ଆଉ ଆସିବ ନାହିଁ ମର୍ତ୍ତ୍ୟରେ କେବେ,
ଏମିତି ରାତିରେ ମାଛିଓଠର ରକ୍ତସ୍ରାବ ମୋଟରୁ ଦିଶେ ନାହିଁ,
ମୋର ବିଶ୍ୱାସ ନେଇଯାଅ, ମୋ' ସ୍ନେହର କଣ୍ଟା ନେଇଯାଅ ।

( ଚଉବିଶ )

ଏତେ ଉଦ୍‌ବେଗ ମୋର କ'ଣ ହେବ, ଏତେ ଉତ୍କଣ୍ଠା ?
ଏପାଖରୁ ସେପାଖ ସେପାଖରୁ ଏପାଖ ମୋର ଆତଯାତ ଯେହେତୁ,
ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ପରିଣତି ବିହୀନ ଖେଳ ?

କାହିଁ ହି'ପଦ କଳକୂଜନରେ ମୋର କି ପ୍ରୟୋଜନ,
କି ପ୍ରୟୋଜନ ଦଣ୍ଡକର ବରଗଛ ଛାଇ ବା ପିଲାଙ୍କ ଅଳିରେ ?
ମୋର ଯଦି ହଠାତ୍ ଚେତା ବୁଡ଼ିଯାଏ ଚଉଦିଗରେ ଯୋଗସନ୍ଧ ନଥିଲେ
ତେବେ କି ସୂର୍ଯ୍ୟ ହୋଇ ଆସିବ, ଦେଖାଇଦେବ ସେମାନଙ୍କୁ
ମୁଁ ଯାହା ଦେଖି ପାରିଲି ନାହିଁ : ବୀଜ ବଦଳିଯାଏ ବୀଜକୁ
ମୁଁ ପଛରେ ଛାଡ଼ି ଆସିଥିବା ଫାଙ୍କା ବିଲମାନରେ ।

( ପଇଁତିଶ )

# ବାନର ମକର କଥା

ଏତେ ପ୍ରାଣୀ ଥାଇ ଥାଇ
ମତେ କାହିଁକି ସାଙ୍ଗ କଲ କେଜାଣି !
କେବେ କ'ଣ ଆଖିରେ ପଡ଼ୁ ନଥିଲେ
ହରିଣ, କୋକଶିଆଳ,
ଚରି ଆସୁଥିବା ଛେଳିଗୋଠ ବା ଗାଈମୂଷା, ଠେକୁଆ ?
ନା ତମର ହାତ ପାଦ ଆଉ ଚଳୁନଥିଲା,
ଆଖିକି ଭଲ ଦିଶୁ ନଥିଲା ?
ତମର ଯୁବା ବୟସ ବା କେବେ ଥିଲା,
ମୁଁ ତମକୁ ଜାଣିଲା ଦିନୁଁ ତ ତମେ ବୁଢ଼ା ।

ଏକଥା ସତ ଯେ ମୋ' ଅଧିକାରରେ
କୋଳି ଗଛଟିଏ ଥିଲା,
ଏକଥା ମଧ୍ୟ ସତ ଯେ ଗୋଟିଏ
କୋଳିଗଛର ଅଧିକାରରେ ମୁଁ ଥିଲି,
ଖରାବର୍ଷା ଶୀତକାକରରୁ ଆଶ୍ରୟ ଲୋଡ଼ା,
ଏ ଜୀବ ଯେ ପାଣିଫୋଟକା
ତମକୁ ଆଉ କ'ଣ ବୁଝେଇ କହିବାକୁ ପଡ଼ିବ ?

( ଛବିଶ )

ଏତେ ପ୍ରାଣୀ ଥାଉ ଥାଉ
ମତେ କାହିଁକି ବାଛିଲ ଏ ଦୁଃଖ ପାଇଁ ?
ଏବେ ତ ବର୍ଷାଋତୁ, କୋଳ ପାତତ ଅଜସ୍ର,
ତମେ ଆଉ ମାଗିବା ପାଇଁ ଆସିବ ନାହିଁ,
କୋଉ ମୁହଁରେ ଆସିବ,
କଳଜା ଥରେ ମାଗିସାରିବା ପରେ
ଠକ ଯିବା ପରେ ?
ତମେ ଅବଶ୍ୟ ଠକ ଯାଇଚ, ତେବେ
ମୋ କଳଜାଟା ଯେ ଆଉ କଏ ପାଇଯିବ
ଏକଥା ମୁଁ ଭରସି କହିପାରୁ ନାହିଁ,
ଥରେ ମାଗିଦେବା ପରେ ସେଟା
ତମର ହୋଇ ରହିଗଲା କାଳକାଳ ପାଇଁ,
ତମର ବୋଲି ହିଁ କ'ଣ ମାଗିଥିଲ କି ?

ମୁଁ ବା ତମ ପିଠିରେ ବସି
କାହିଁକି ଗଲି କେଜାଣି,
ମତେ ତ ଜଣାଥିଲା ଯେ ସେଠି
ଅଗାଧ କାଦୁ ପାଣି ।
ତମର ସାମାନ୍ୟ କଡ଼ ମୋଡ଼ାରେ
ମୋର ସବୁ ସରିଥିଲା,
ତମେ ବା କେମିତି ମତେ
ଲେଉଟାଇ ଆଣିଲ,
ବିଶ୍ୱାସ କ'ଣ ସନ୍ଦେହର ଅନ୍ୟ ରୂପ ?
ନା ସନ୍ଦେହ ବିଶ୍ୱାସ ବୋଲି କହୁଛି ନାହିଁ
ଯେତେ ଯାଏଁ ତମର ମୋର

( ସଇଁତ୍ରିଶ )

ଚଳପ୍ରଚଳ ହେବାର ଯାଗା ଅଲଗା
ତମେ ପାଣିର, ମୁଁ ଗଛଡ଼ାଳର ?

ଆମେ ଉଭୟେ ଥରେ ଥରେ ହାରିଚେ,
ଥରେ ଥରେ ଜିଣିଚେ ।
ଖୁପିରେ ମୋର ରହିବା କଥା,
ତେବେ କାଳ ସାଗରଠ
କୁଆଡ଼ୁ ଅପି ଗୋଟାଏ କୁଆ
ଗାଜ ଗଜ ହୋଇ ମତେ ଶୁଆଇ ଦେଇନ;
ତମେ ରୁପାର ଝଲମଲ ଲଞ୍ଜ ପିଟିପିଟି ପାଣିରେ
ମାଡ଼ି ଆସୁଚ କୂଳ ଆଡ଼କୁ ଦେଖୁଚ,
ରକ୍ତସ୍ରାବ ହେଉଚ ମୋ' ଭିତରେ;
ଆମେ ପରସ୍ପରକୁ ଶେଷଥର ପାଇଁ
ବିଶ୍ୱାସ କରିବାର ମୁହୂର୍ତ୍ତ କ'ଣ ଆସିଗଲା,
ପରସ୍ପରକୁ ସନ୍ଦେହ କରିବାର ?
ମୁଁ ଆଜି ତଳକୁ ଡେଇଁ ପାରିବନି,
ଗଛ ସମେତ ଉପାଡ଼ ନେଇଯାଅ ।

## ମଝିରୁ କେତେ ପୃଷ୍ଠା

ତମର ମୃତ୍ୟୁ ପରେ
ପଚ୍ଚିଶ ବର୍ଷ ତଳେ ତମେ ଲେଖିଥିବା
କ୍ଷୀଣକାୟ କାବ୍ୟଟିର ଖଣ୍ଡିଏ କପି
ଆମେ ଉଦ୍ଧାର କଲୁ ପୁରୁଣା ସିନ୍ଦୁକର କବଳରୁ ।

ପାନଭଳି ଧୂଳି, କୁଡ଼ିଆଣି ସୂତା ପୋଛିଦେଇ
ଟେବୁଲ୍ ଉପରେ ରଖିଲୁ
ଆମର ସାମୂହିକ ପର୍ଯ୍ୟବେକ୍ଷଣ ପାଇଁ,
ଆକସ୍ମିକ ଦମକାଏ ପବନ
ପତଳା ମଲାଟଟିକୁ ଉଠାଇଦେଲା,
ତମେ ଯେମିତି ଖଟ ଦାଢ଼ରେ ଝୁଲିପଡ଼ିଥିବା ଚଦରକୁ
ଉଠାଇଥିବ ଆମ ପିଲାଦିନେ
ଆମେ ସମସ୍ତେ ଖଟତଳ ସନ୍ଧରେ ଲୁଚିଥିଲା ବେଳେ,
"ଏଥର ତମେ ମତେ ଖୋଜିବ"—କହିବ ତା'ପରେ ।

ଆମେ ପ୍ରଥମେ କେତେ ପୃଷ୍ଠା ପଢ଼ିଲୁ,
ଦେଖିଲୁ, ଅଭିମନ୍ୟୁ ପରି ଜଣକର
ସତର ଅଠର ବର୍ଷର ଯୁବକ ଜଣେ

(ଅସମାପ୍ତ)

ଡେଇଁ ପଡ଼ୁଛି
ଥଳକୂଳ ପାଉନଥିବା ବଢ଼ିଲା ନଈକୁ;
ଶେଷ କେଲେଣ୍ଡର ପୃଷ୍ଠାରେ
ଗାଁ ଲୋକେ ଅପେକ୍ଷା କରି ରହିଛନ୍ତି କୂଳରେ
ସେ ବାହୁଡ଼ି ଆସିବ ବୋଲି
ନଈ ସେପାରି ଭଙ୍ଗା ଦେଉଳର ଖବାଖିଆ ଦଅଁଙ୍କୁ ଧରି ।
ମଝିରୁ କେତେ ପୃଷ୍ଠା ନଥିଲା ।

ଆମେ ଭାବିଲୁ ସେଇ କେଲେଣ୍ଡର ପୃଷ୍ଠା
ନ ମିଳିଲେ ବି କିଛି ଯାଏ ଆସେନା ।
ଭଉଣୀ କିନ୍ତୁ କୋହ ସମ୍ଭାଳି ନପାରି
ଆଉ ଘରକୁ ଉଠିଗଲାବେଳେ,
ଆମେ ତା'କୁ କ'ଣ କହି ଫେରାଇ ଆଣିବୁ ?
ତମେ କ'ଣ ଏବେ ବି ସେଇ ବିଶ୍ୱାସ ରଖିଛ ଯେ
ପ୍ରତ୍ୟେକେ ନିଜ ନିଜ ପେନ୍‌ସିଲ୍‌ କାଟିବା କଥା,
ସ୍ୱପ୍ନ ଏକାନ୍ତ ବ୍ୟକ୍ତିଗତ, କାମ ପଦ୍ଧତି ସମାନ ?
ତମ ନିଜ ସ୍ୱପ୍ନର ଉଲ୍ଲେଖ ଥିଲା
ବୋଧହୁଏ ସେଇ କେଲେଣ୍ଡର ପୃଷ୍ଠାରେ ।
ଅଧିକନ୍ତୁ, ତମେ ତ ଆଉ ଫେରିବନାହିଁ କେବେ ।

( ଗୁଳଣ )

## ଅନ୍ଧାର ବଜେ

ଅନେକ ଅନେକ ଦିନ ଧରି
ସେମାନଙ୍କ ସାଙ୍ଗରେ ଚିହ୍ନା ପରିଚୟ, କଥାବାର୍ତ୍ତା ।
ଦିନର ଆଲୁଅରେ ସେମାନେ
ମିଶିଯାନ୍ତି କୁଆଡ଼େ ପଞ୍ଚଭୂତରେ ।
ପବନ ଆଉ ପାଖରେ
ସୂର୍ଯ୍ୟର ଲାଲ୍ ପୁଚ୍ଛ ଲୁଚିଯିବ ଯେମିତି
ସେମାନେ ଫେରି ଆସିବେ,
ଅପେକ୍ଷା କରିବେ ମତେ ଅଧରାତି ଯାଏଁ
ମଶାଣିର ନିମ ଗଛରେ ।
ସେମାନେ ମୋର ଶବ
ଅନେକ ଅନେକ ମୃତ୍ୟୁର ।

ଜଣକ ପରେ ଜଣେ
ଲେଟି ପଡ଼ିବେ କାନ୍ଧରେ ମୋର, କହିବେ
ଗଳ୍ପ, ଗଳ୍ପ, କଥା ଅଛି···
ତା'ପରେ ଖାଲି ଗୋଟିଏ ପ୍ରଶ୍ନ
ଯେ କୌଣସି ଉତ୍ତରଠାରୁ ଗଭୀର !
ମୁଁ ଯଦି ଅଟକିଯାଏ ଢୋକଟେ ପାଣି ପାଇଁ
ବିଲପଦା ମଝିର ଭଙ୍ଗା କୂଅ ପାଖରେ,

( ଏକସ୍ଖଳନ )

ମୋ' ଘାଟି ହଠାତ୍ ଭୁଲିଯିବ
ପାଣି କେମିତି ପିଆଯାଏ,
ଝାଳ ବୁନ୍ଦାଏ ତ୍ରୁଣ୍ଟାଙ୍କ ଦେଲା ତ
ଝାଁପି ନେଇଯିବ ନକ୍ଷତ୍ରଟେ ।

ବାଙ୍କାଟଙ୍କ ଗୀତ କଟିବ ବାଟଚଲାରେ
ଘରବୁଢ଼ା ଲୋକର,
ଅନ୍ଧାରବଜେ ସରିଯିବ,
ଶବ ଓହ୍ଲାଇଯିବ, ଅପସରିଯିବ
ମନ୍ଦାର, କନଅରର କେଶରକୁ ।
ରାଜ୍ୟ ସୀମାରେ କମାର ପଜାଉଥିବ ଛୁରୀ
ଆଜ ଗୋଟାଏ ମୃତ୍ୟୁ ପାଇଁ,
ଆଜ ଗୋଟାଏ ପ୍ରଶ୍ନ ପର ଅସମୀଚନ, ଶାଷ୍ଟ୍ରଣ ।
ଏଇଥିଲାଗି ତ କୁଆ ବସାରୁ ବାହାରେ
ପୁଣି ଫେରେ,
ମାଟି ଉଚାଟ ସ୍ୱରରେ ନ ଗାଇ ପାରିବା ଗୀତ
ଗାଇବସେ,
ତାଳପତ୍ର ହଲେ,
ଛନ୍ଦାଛନ୍ଦ ହୋଇଯାଆନ୍ତି ରାସ୍ତାଘାଟ ।
ଇଚ୍ଛା ହୁଏ ଲୋକଲୋଚନ ଅନ୍ତରାଳରେ
ମିଶିଯାନ୍ତି ଯାଇ ଆଜ ଗୋଟିଏ ଛେଦ ଚିହ୍ନରେ,
ହଜାର ହଜାର ହଜାର ହଜାର ଶବ୍ଦ ପରେ ଯେ ଆସେ,
ଦରଆଉଜା କବାଟ ପରି ହସେ ।

(ବସ୍ତ୍ରାଳଣ )

# ତପ୍ତପାଣିରେ ପିକ୍‌ନିକ୍

ପଥରର ବି ଗୋଟାଏ ମନ ଅଛି, ପାଟି ଅଛି ।
ବେଳେ ବେଳେ ଉଷ୍ମ ଆବେଗରେ
ଭରିଦିଏ ସିମେଣ୍ଟ୍ କୁଣ୍ଡକୁ
ପାଣି ଶବ୍ଦରେ,
ଆଜି ବେଳେବେଳେ
ବୁଢ ପରି ଥଣ୍ଡା ଓ ନରମ,
ବନ୍ଧାଯାଏ ଶୋଭିଲା କାପ୍ତାଙ୍କର ଥଣ୍ଟ ଦାଢ଼ରେ ।

ଆମେ ଏଠିକି ଆସିବାର ଉଦ୍ଦେଶ୍ୟ
ଗାଡ଼ି ଭିତରେ ରହିଗଲା;
ସବୁ ନେଇ ଡ୍ରାଇଭର୍ ଫେରାର୍ ।

ଅନ୍ୟ ଗୋଟିକ ମାତ୍ର ଉଦ୍ଦେଶ୍ୟ
ପଥରର ପାଟିରେ
ଜାହ୍ନିଁ ଉଛରେ,
ପୁରୁଣା ମାଟି, ଆକାଶ,
ପୁରୁଣା ଡାଳପତ୍ର ଗହଳରେ ।

( ଢେଙ୍କାନାଳ )

ସେହି ଅଦୃଶ୍ୟ ଶୂନ୍ୟତାର ବାଘ
ଆଜେ କେବେ ଫଣି ଆସିବ ନାହିଁ, ବଟନୋଧ,
ତମ କ୍ୟାମେରାର ଚିଞ୍ଜରକୁ ।

ଜଣେ ଅଧେ ତଥାପି
ଦକ୍ଷ ଶିକାରୀ ଠାଣିରେ
ଏପଟ ସେପଟ ଓଲଟାଇ
ଦେଖି ନେଉଛନ୍ତି
ଅସହଜ ମୂହୂର୍ତ୍ତର ଶବକୁ ।

ଜଣେ ଅଧେ ଖାଲି କାଗଜରେ
ଆଙ୍କିବାରେ ଲାଗିଛନ୍ତି
ପାହାଡ଼, ଗଛ, ଉପରଓଳର ସୂର୍ଯ୍ୟ,
ଖାଲି ପେଟର ଭୁକୁଥିବା କୁକୁର ।

ଖଣ୍ଡେ ଗୀତ କେଉଁଠି
ଧୂଆଁ ଭଳି ଉଠୁଛି,
ଛାଳମାଡ଼ରେ ଧୂର ସହରର ବଥାନ୍ତ ।

ହଟ ପାଲଟି ଯାଉଛି ଚନାବାଦାମ,
କୁଆ ଉଠାଇ ନେଇଯାଉଛି
ଫଣସ ଚଢ଼କୁ ।

ପଡ଼ର ନାହିଁ କଏ ଚୋଲଛି ଦେଉଳ,
କଏ ଥାପିଛି ପଥରକୁ

( ଚଳଚ୍ଚିତ୍ର )

ଦେବତା କରି;
ଆମେ ଏଠିକି ଆସିଚେ
ପଚ୍ଛରିବାକୁ ନୁହେଁ,
କୋଳି ତୋଳିବାକୁ ।

କେହି ଜଣେ କହୁଚି
ଦଳ ବାନ୍ଧ ସେମାନେ
ଖୋଜୁଚନ୍ତି
ଝରଣାର ଉତ୍ସ,
ପର୍ବତ ଉପରର ଦୂରର ତାଳପତ୍ର ହଲିବା,
ଖଣ୍ଡ ଖଣ୍ଡ ପଥର
ଗଡ଼ି ଆସିବା ବ୍ୟଞ୍ଜିତ
ଆଉ କିଛି ଦିଶୁ ନାହିଁ, ଶୁଭୁ ନାହିଁ ।

ଶବ୍ଦ ପରି ସେମାନେ ହଜିଗଲେଣି,
ଚଢ଼େଇ ପରି ବଗୁଡ଼ି ହୋଇଗଲେଣି
ଦିଗ୍‌ବିଦିଗ ।

ଯେତେବେଳେ ଫେରିଲେ,
କାହା ହାତରେ ବଣୁଆ ଫୁଲ ପେନ୍ଥାଏ,
କାହା ହାତରେ ଖଣ୍ଡେ ଚକ୍ ଚକ୍ ଗୋଡ଼ି,
କଞ୍ଚା ସବୁଜ ଡାଳ,
ଅଜଣା ପକ୍ଷୀର ପର ।

( ପଇଁଗୁଲରି )

କେହି ଜଣେ କହୁଛ,
ଗୋଟାଏ ବୁଢ଼ା ଆଦିବାସୀ ପାଙ୍ଗରେ ଦେଖାଦେଲା,
ସେ ବାରଣ କଲା ଉପରକୁ ଯିବାକୁ,
ଆହୁରି ଉପରକୁ ।

ଆଉ ଜଣେ ପଚାରୁଛ,
କାହିଁକି ଆମେ ଏଠିକି ଆସିଥିଲେ ?
' ଖଣ୍ଡିଆ ଆଣ୍ଠୁରେ ତା'ର
ରକ୍ତ ଟୋପି ଟୋପି,
ପ୍ୟାଣ୍ଟ୍ ଚିରା ।
ତା' ପାଖରେ ଶେଷସୂର୍ଯ୍ୟ ଅଟକିଗଲା
କ୍ଷଣକ ପାଇଁ,
ସବୁ ଆଲୁଅ ଲିଭାଇଦେଇ
ଚାଲିଗଲା
ଫାଙ୍କା ଡାକବଙ୍ଗଳାର ଚୌକିଦାର୍ ପରି ।

( ଛତ୍ରୀକଣ )

## ଭୁଲ୍ ବୁଝାମଣା

ତା'ର ସବୁଜ କ ଯୁକ୍ତି
ଅଣ୍ଡା ଖୋଳପା ପରି ଭଙ୍ଗୁର,
ଶବ୍ଦ ଗୁଡ଼ାକ ଖଣ୍ଡ ଖଣ୍ଡ କାଚ
ଆଜି କଣ୍ଠୁ ରକ୍ତ ବୁହାଇ ଦେବାର ଚେଷ୍ଟାରେ,
ତା' ମୁଣ୍ଡର ଚର୍ମ ପଣିତ
ନ୍ୟାୟ ମୀମାଂସାର ବାତ୍ୟାବସାରେ ।

ସତେ ଅବା ସେ ଆଜି ଚୁପ୍ ହେବନି,
ଶେଷକୁ କ୍ଷୀଣ ଚିତ୍କାରଟେ ହୋଇ ହିଁ
ହଜିଯିବ ମହାଶୂନ୍ୟରେ ।

ତା'ର ଭାଷାର ହାତ ଧରି
ବୁଲିଯାଇ ହୁଅନ୍ତା ପାର୍କ ଆଡ଼େ,
ଡାକି ଆଣି ହୁଅନ୍ତା ଅନାଥ ସକାଳକୁ ।
ତା'ର ଯୁକ୍ତିର ଏଣ୍ଟୁ ତେଣ୍ଟୁ ଗାରକୁ
ପୋଛି ଦେଇ ହୁଅନ୍ତା କେନ୍ଦେସରେ ।

ତା'ର ଜଡ଼ ଆଉଁଷି ଦେଇ ପାରନ୍ତା
ଯେ କୌଣସି କଷ୍ଟର ନାଲିମୁଣ୍ଡାକୁ,

'( ସତସ୍କଳଣ )

ତା'ଣ ଦାନ୍ତ ଭଣ ଦେଇ ପାରନ୍ତା
କାକୁସ୍ଥ ଖଳଙ୍କର ଗିନା ।

ସେ କଥା ଭୁଲିଯାଇଛ,
କେଉଁଠି ଲୁଚାଇଣ ତା' ଭୂଲ୍‌କୁ,
କେଉଁ ମାଟି ପରରେ, କେଉଁ ଗଛ ମୂଳେ
ବାପାଙ୍କ ଅସ୍ଥି ଦ'ଖଣ୍ଡ ପର ।

( ଅଠବ୍ଲିଡ )

# ଚିଠି

ସଂସାରର ସମସ୍ତ ଲୋକ ଯେମିତି
ଅପେକ୍ଷା କରିଥିଲେ ଏ ଚିଠିଟିକୁ,
ଚିଠିଟି ଆସି ପହଁଚିଚି
ଆଜି ଡାକରେ, ଜ୍ପର୍ଓଲ ଡାକରେ,
କାଲିର ପରଦିନର
ଆଗାମୀ ଅନେକ ଦିନର ଡାକ ରଦ୍ଦ କରିଦେଇ ।

ଏତେକାଳ ଧରି ମୁଁ ଭାବିଥିଲି
କଳ୍ପନା କରିଥିଲି ଯେ
ଆମ୍ଭର କୌଣସି ନା କୌଣସି
ଆକାଂକ୍ଷା ଅଛି, ସ୍ୱପ୍ନ ଅଛି
ଏଇ ମାଛରଙ୍କାର
ଝଲମଲ ସଚଳତାର ସେପାଖରେ ।

ଗାୟତ୍ରୀ ଜପିଲା ବେଳେ
ମୁଁ ଝୁଣ୍ଟି ପଡ଼ିଥିଲି ବ୍ରାହ୍ମ ମୁହୂର୍ତ୍ତରେ;
ଆଜି ସକାଳେ, ଅସହ୍ୟ ଗରମରେ
ତରଳ ବୋହିଯାଉଥିଲା ଆକାଶ,

( ଅଣଶୁଣ )

କଲମ ଖଣ୍ଡା ଭାଙ୍ଗିଦେଇ
ମୁଁ ଅଭିମାନରେ, ଅବଶୋଷରେ

ଲକ୍ଷ୍ୟ କଲି ହାଳଦିଆ ଘୋଡ଼ାକୁ,
ମୋ' ରକ୍ତରୁ ମୋ' ଦୁଃଖରୁ ସ୍ୱାଧୀନ,
ନିରାଲମ୍ବ ସେ ପଶୁ
ଏକମୁହାଁ ଭାସିଯାଉଥିଲା ଅନ୍ୟ ଦିଗରେ,
ମୋର ଭବିଷ୍ୟତ ପରି
ଏକା ସାଙ୍ଗରେ ଚିହ୍ନା ଅଚିହ୍ନା କୋମଳ କଠୋର ।

ସବୁଠୁ' ବେଶୀ ଅପ୍ରସ୍ତୁତ
ବେଳାରେ ହିଁ ଆସି ପହଞ୍ଚନ୍ତି ରୋଗୀ ଓ ଅତିଥି,
ଔଷଧ ନାହିଁ, ସମୟ ନାହିଁ,
ରୁ' ନାହିଁ କହି ଫେରାଇ ଦେଇ ହୁଏନା !
ଗଠିତି ଜଙ୍ଗଲ ଭିତରର
ମନ୍ଦିରର ଦ୍ୱାର ଭଳି ସବୁବେଳେ ଖୋଲା,

ସବୁ ଋତୁରେ, ଅନାଟନ
ଓ ସମୃଦ୍ଧିରେ, ନାହିଁରେ ଓ ହଁ ରେ ।
ମୁଁ ତମ ରାଜ୍ୟର ତମ ଭାଷାର
ଶେଷ ସୀମାରେ ଆସି ପହଞ୍ଚିଛି
ଏଇ ଗଠିତି ପାଖରେ,
ଏଇ ଗଠିର ନିର୍ଦ୍ଦିଷ୍ଟ ଶୁଭେଚ୍ଛାଟିକକରେ ।

( ଦଗ୍ଧ ଗୃହ )

# କଙ୍କି

ମା' ମରଣର ଭୟ
ବାପାଙ୍କ ଅନ୍ୟମନସ୍କ ଉତ୍ତରରେ ସମାହିତ ।

ଛୁଟି ଦିନର ଦରଆଉଜା ଦ୍ୱାରମାନ ଖୋଲିଯାଏ ।
ନାଲି ଚଳକୁ ପ୍ୟାଣ୍ଟ, ବୋତାମ୍ ଲାଗି ନଥିବ ଫ୍ରକ୍ ପିଠିରେ,
ସେମାନେ ବାହାରିଯିବେ କଲୋନିମୁଣ୍ଡ ଘାସ ପଡ଼ିଆକୁ
କଙ୍କି ଧରିବାକୁ ।

ସରୁ ସରୁ ଗୋଡ଼ ଆଗେଇଥିବ ସନ୍ତର୍ପଣରେ,
ସାନ ସାନ ହାତ ଲମ୍ବିଥିବ ସୁଯୋଗ ଶିକାର ପରି
ଉଡ଼ି ପଳାଉଥିବା କଙ୍କି ପଛରେ ।
ଲାଲ୍ ମୋଟା ଗୁଡ଼ାକ ସବୁଠୁ ବଦ୍‌ମାସ
କେବେ ଧରା ଦେବେ ନାହିଁ,
ନେଳି ସରୁ ଗୁଡ଼ାକ ଲୁସି ପରି ବୋକା ।

ଘର ଛୁଣ୍ଡାଇବା ବେଳେ
କୌଣସି ସୂର୍ଯ୍ୟ ଅଟକାଇଦିଏନା ହାତକୁ,
ନେଛଶ ମାରିଦେବା ବେଳେ
କୌଣସି ପବନ ଛଡ଼ାଇନେଇପାରେନା ପଥରକୁ ।
କିଏ ଜାଣେ ଠିକ ଆନନ୍ଦର ରଙ୍ଗ କ'ଣ !

ସେମାନେ ଫେରି ଆସିବା ବେଳକୁ
ପ୍ରତ୍ୟେକ ଗାଲ ଲାଲ୍
ଗୋଲାପ ପରି, ଧଗ ନପଡ଼ୁଥିବା କର୍କି ପରି ।

ଆମେ ବାପମାନେ
ସେମାନଙ୍କୁ ଡାକହାକ ଉଠାଇ ନେଇ ଆସୁ
ଅନେକ ବେଳୁ ଭୁଲଯାଇଥିବା କ୍ଷତ ଯଦୁ ଯେମିତି,
ଶିଖାଇବାକୁ ଚେଷ୍ଟା କରୁ
ଯାହା ସେମାନେ ଶିଖି ପାରିଥାନ୍ତି ।

## ଏମ୍. ଟି. ପି.

ଗୋଟାଏ ବଡ଼ ମାଟିଆ କାଗଜର ରେଜିଷ୍ଟର୍‌ରେ କ'ଣ ଲେଖୁ ଲେଖୁ
ଲେଡ଼ି ଡାକ୍ତର୍ ଧୈର୍ଯ୍ୟର ସହିତ ଶୁଣିଲେ,
ଦୁଇ ପିଲାଙ୍କ ବୟସ ପଚାରିଲେ,
ବନ୍ଧୁ ବାପ ମା'ଙ୍କୁ ଦେଇଥିବା ପରାମର୍ଶ ଦୋହରାଇଲେ
ଦିନ ସମୟ ଠିକ୍ କରିଦେଲେ ।

କୌଣସି କବି, କୁମାର, ଜଣେ କ ବାପ୍ପାଚଡ଼େଇ
ଏତେ ଦୋଷୀ, ଏତେ ଆଶାନ୍ତ ଦିଶିନଥିବ, ସେଦିନ
"ଆପଣ ଶିକ୍ଷିତ ଲୋକ" ଶୁଣୁଥିବା
ବାପଟି ଯାହା ଦିଶିଲା,
ଅଣ୍ଟା ପଛରେ ହାତ ଯୋଡ଼ି ଠିଆ ହେଲା ।
ନଈବଢ଼ି ଆସୁଥିବା ଆତଙ୍କରେ
ଖାଲି ହେବାକୁ ଯାଉଥିବା ଗାଁ ପରି ପଡ଼ିରହିଲା
ସ୍ତ୍ରୀଲୋକଟି ।

ନିର୍ଦ୍ଦିଷ୍ଟ ଦିନ ସକାଳ ସାଢ଼େ ଆଠଟାରେ
ନିର୍ଦ୍ଦିଷ୍ଟ ଓ ସୁଖମୟ ଭବିଷ୍ୟତଟିକୁ ସେମାନେ
ଗଢ଼ିବା ଆରମ୍ଭ କଲେ, ସାରିଦେଲେ ଦଶ ମିନିଟ୍‌ରେ ।

( ତେପନ )

ସାତଦିନ ପରେ ପୁଣି ଆସିବା ପାଇଁ
ଲେଡ଼ି ଡକ୍ଟର କହିଲେ, ଜସ୍ମିନ୍ ଦୋଇଗଲେ ।

ମାତ୍ର ଆସିଲା ବ୍ଲିଚିଙ୍ଗ୍ ପାଉଡ଼ର୍ ଓ ଡେଟଲ୍‌ର ଗନ୍ଧ,
କେଉଁଠି ଖୋଲା ଥିବା ଟ୍ୟାପ୍‌ରୁ ପାଣି ଖସୁଥିବାର ଶବ୍ଦ ।
"ଝିଅଟା ସକାଳୁ କିଛି ଖାଇନ" କହି ସ୍ତ୍ରୀଲୋକଟି
ଚାଲି ଚାଲି ଆଗେଇଗଲା ରିକ୍ସା ଆଡ଼କୁ ।
ଗୋଟାଏ କିମ୍ବଦନ୍ତୀ, ଗୋଟାଏ ଅଦୃଶ୍ୟ ଅନୁଭବର ହଜିଯିବା
ହଜିବା ନୁହେଁ, କ୍ଷତ ନୁହେଁ ।
ପୁଣି ଥରେ
ଆକ୍ଷିମାନେ ଯାଇ ଝୁଲିପଡ଼ିଲେ
ଚନ୍ଦ୍ରା ପୃଥିବୀର ବେକରେ ।

( ଚଜବନ )

# ଠିକଣା

ତମ ଚିଠିର ଉତ୍ତର ଲେଖି ସାରିଚି
ପୋଷ୍ଟ କରିନ ଏଯାଏଁ,
ଲଫାଫା ଅଠା ଲଗାଇ ବନ୍ଦ୍ କରିସାରିଚି
ଠିକଣା ଲେଖିନାହିଁ ଏଯାଏଁ ।

ଖୁବ୍ ଇଚ୍ଛା ହେଉଚି
ଆଜି କାହାରି ଠିକଣା ଲେଖି ପଠାଇଦେବି,
ସେ ମତେ ଚିହ୍ନିବ ନାହିଁ,
ତମକୁ ଚିହ୍ନିବ ନାହିଁ,
ଏପଟ ସେପଟ କରି ଡାକଘରର ମୋହର
ପଢ଼ିବାକୁ ଚେଷ୍ଟା କରିବ;
କୌତୁହଳ, କୌତୁକ ସରିଯିବା ପରେ
ସେ କନ୍ତୁ ଠିକ୍ ବୁଝିପାରିବ
ଆମ ଅଙ୍କତାର
ଆମ ଅପମାନ ଓ ଅଭିଯୋଗର ସାରାଂଶ ।

ସେ କେବଳ ଈଶ୍ୱର ନ ହୋଇଥିବା ଦରକାର ।

ମୁଁ ଅବଶ୍ୟ ତାଙ୍କର ଠିକଣା ଜାଣେନାହିଁ ।

( ଚମ୍ପାବନ )

# ଫଟୋଗ୍ରାଫ୍

ଅଚହ୍ଣା ଲୋକଙ୍କର ଫଟୋଗ୍ରାଫ୍
ଚଳୁ ଗ୍ଲାଇରେ ।
କୌତୂହଳର ଆଙ୍ଗୁଠି
ଉଠାଇଆଣି ଟେକା ଧରେ
ଆଖିର ଦର୍ପଣ ଆଗରେ ।

ଲୁଚ ଲୁଚ ଓହ୍ଲାଇଆସେ ସୂର୍ଯ୍ୟ
ଫଟ ଗହ୍ୱଳରୁ
ଦେଖୁଥିବା ଲୋକର
ନରୁପ ଦ୍ୱ କାନ୍ଧ ଉପରକୁ ।

ଆମେ ବର୍ତ୍ତମାନ ପାଞ୍ଚ ଜଣ ।
ତିନ ଜଣଯାକ ଓହ୍ଲାଇ ପାରୁଥାନ୍ତି
ଫଟୋଗ୍ରାଫ୍‌ର ପାହାଚରୁ,
ଆମେ ବର୍ତ୍ତମାନ ଗଢ଼ିଦେଇ ପାରନ୍ତୁ ଇତିହାସ,
ମଧର, କ ନେତାଙ୍କୁ ହତ୍ୟା କରିବାର ଷଡ଼ଯନ୍ତ୍ର ।

ହୁଏତ ଗୋଟାଇ ପାରୁଥାନ୍ତି
କାହା କାନରୁ ଖସିପଡ଼ୁଥିବା ଫୁଲ,

( କ୍ରମଶ )

ମଲ୍ଲ ପ୍ରଜାପତି ବା ପୋଷ୍ଟର ନ ହୋଇଥିବା ଛବି ।
ଜୀବନ ଧରେଇ ପଡ଼େ ନଇବଢ଼ି ପରି,
ବନ୍ଧୁକଧାରୀ ପୁଲିସ୍
ଘେରି ଠିଆ ହୋଇଯାନ୍ତି,
ଦାବୀ କରନ୍ତି, ଫେରାଅ, ଫେରାଇଦିଅ ।

ମୁଖବନ୍ଧ ଭୁଲ୍ ଧାରଣାରେ ଭର୍ତ୍ତି
ପରିଚ୍ଛେଦ ଯୋଜନା ଭୁଲ୍ ।
ନିଜଛଡ଼ା ବା କୋଉ ଦେବତାଙ୍କୁ ଜାଣ ତମେ ?
ପରିଶେଷରେ ମାରିପକାଅ ନିଜକୁ ।
ବାଟ ହୁଡ଼ିଥିବା ଅତିଥି ପରି କଳ୍ପନା
ହାତ ମାରେ ଅନ୍ୟ ସାହିର କବାଟରେ ।

ଫଟୋଗ୍ରାଫ୍ ମୁଁ ସୂର୍ଯ୍ୟ ହାତକୁ ବଢ଼ାଇଦିଏ ।
ଦର୍ପଣରେ ଉଙ୍କିମାରି ଉଠେ
ବେଞ୍ଚିରେ ବସିଥିବା ତିନିଜଣଙ୍କ ମୁହଁ ।
ସବୁ ଉଦ୍ଦେଶ୍ୟ ସ୍ଥିର, ସୁଦୂର ।
ପୁଣି ଫଟୋଗ୍ରାଫ୍‌ଟା ଗଛ ଗୁଡ଼ିଏରେ,
ହାତ ବାଜି ଟିକିଏ ଅସନା ଯାହା ।

## ଫାଙ୍କା ପ୍ଲାଟ୍‌ଫର୍ମରେ ଏକା ଏକା

ଫାଙ୍କା ପ୍ଲାଟ୍‌ଫର୍ମରେ ଏକା ଏକା,
ପାଦ ଝୁଲଚ, ଗୋଡ଼ ନାହିଁ,
ହାତ ଝୁଲଚ, ହାତ ନାହିଁ,
ଆଖି ନାହିଁ, କାନ ନାହିଁ ।
ଥୁଣ୍ଟା ଚଳନ୍ତା ଗଛଟେ ବୋଲି ଭାବ ନେଇ
ବାଗାଚକ ଗଡ଼
ଆଉଜିଗଲା, ଲଖିଗଲା ମୋ' ବେକରେ ।

ତା'ପରେ ଯାଇ ଚେତନା
ଫେରବ ଫେରବ ହେଲା,
ଗୁଳିଖିଆ ଗୁଡ଼ ଟାଁକୁ ବାହୁଡ଼ୁଥିବା ଲୋକଟି ପରି ।

ମୁଁ ସେଇ ଲୋକଟିକି ଜାଣିଚ—
ଯିଏ ଶୋଇଚ ଆଁ କରି
ଅନ୍ଧାର ଆକାଶରୁ ଖଣ୍ଡେ
ଝୁଲି ରହିଚ ଉପରେ,
ଗ୍ଲଡ଼ନ୍ ଭ୍ଷେର ଗୁଡ଼ ପଳାଇଥିବା ଗୁମ୍ଫା ମୁହଁର
ଛିଣ୍ଡା କେର୍‌ପାଲ୍‌ର ପର୍ଦ୍ଦା ପରି;

( ଅଠାବନ )

ତା'ର ଗୋଟାଏ ଗୋଡ଼ କଟିଯାଇଚ
କେବେ ନା କେବେ ଟ୍ରେନ୍ ତଳେ ପଡ଼ି ।

ଏବେ କୌଣସି ଟ୍ରେନ୍ ଆସିବାର ନାହିଁ, ଯିବାର ନାହିଁ ।
ଷ୍ଟେସନ ସୁନା ରୂପା ହୀରାର ଅଳଙ୍କାରକୁ
ଲୁଚାଇ ରଖିବାର ଜାଗା କୋଉଠି ନାହିଁ ।

## ଫଳାହାର

ଏକୁଟିଆ କୌଣସି ଭୁଲ୍ କାମ
କରି ହୁଏ ନାହିଁ, ସେ କରି ନଥିଲା ।
ଥରେ ଅଧେ ଯା' ଖାଲି ଶୋଇବା ଘରକୁ
ପଶି ଆସିଥିବା ନେଙ୍ଗଟିକି ସେ ଚଢ଼ ଦେଇଥିଲା ।
ଅନୁପସ୍ଥିତ ପଡ଼ୋଶୀର ନାଁରେ ଆସିଥିବା
ଚିଠିଟିକୁ ଯା' ପଢ଼ି ଦେଇଥିଲା ।
ବେଶୀ ଦିନ ବି ଏକୁଟିଆ ରହି ହୁଏ ନାହିଁ,
ସେ ରହିପାରି ନଥିଲା ।

ଦିନେ ତା'ର ସ୍ମୃତି ଭିତରେ
ହଟ୍ଟଗୋଳ ଲାଗିଗଲା,
ଫଳବାଲାର ଡାଲାରୁ ସବୁଠୁ ଉଜଳଡାଉଳ
ଫଳଟିକୁ ଉଠାଇନେଇ ସେ ଦୌଡ଼ିଲା,
କାନ୍ଥ ପରି ଲୋକେ ତାକୁ ଘେରିପିବାର ଦେଖି
ସେ କାମୁଡ଼ି ପକାଇଲା ଫଳଟିକୁ, ହସିଦେଲା,
ସେପରି ନିରର୍ଥକ ହସ ସେ
ଆଜି କେବେ ହସିପାରିନି ଏଯାଏଁ ।

( ଷାଠିଏ )

ଦିନ ଗଲା; ଦିନ ପରେ ଉଜ୍ଜ୍ୱଳ ରାତି ଗଲା ।
ଆସ୍ତେ ଆସ୍ତେ ଓହରିଗଲେ ଲୋକେ ।
ଚଳନ୍ତା ଟ୍ୟାକ୍ସି ଭିତରୁ କେହି ଜଣେ
ତାʼ ନାଁ ଧରି ଡାକଦେଇ ତାକୁ
ଚତୁର୍ଭୁଜ କରି ଦେଇଗଲା ।
ଦୁହିଁଙ୍କର ଭେଟ ହେଲା ଗୋଟାଏ ପରିତ୍ୟକ୍ତ ପାର୍କରେ,
ଆମ୍ବା ପରି ଘଞ୍ଚ ନିରନ୍ଧ୍ର ଅନ୍ଧାରରେ,
ଆଲୁଅରେ ଲାଜମାଡ଼ିବ ବୋଲି ।

ରାସ୍ତା ଉପରୁ ଉଠାଇ ଆଣିଥିବା ସୁଖଟିକ
ସେ ଦୁହେଁ ଦୁଇଭାଗ କଲେ ।
ଫୁଲ ଝଡ଼ି ପଡ଼ିବା, ରକ୍ତ ବୋହିଯିବା ଭଳି
ଅସ୍ପଷ୍ଟ ଶବ୍ଦ କେତେଟା ଯଥେଷ୍ଟ ହେଲା,
ଭାଷା ଅପସରି ଗଲା ରେଲ୍ ଲାଇନ୍ ସେପାଖ ସହରକୁ ।
ମାଟି ଗୋଡ଼ର କବାଟରେ ସେ ଦୁହେଁ ହାତ ମାରିଲେ,
କବାଟ ବନ୍ଦ୍ ରହିଲା ପାଟି ପରି
ଢୋକ ଢୋକ ପବନ ଗିଳୁଥିଲା ବେଳେ ।

ବର୍ତ୍ତମାନ ସେ ପୁଣି ଏକୁଟିଆ ।

ବାହାରେ ଗଛ ମୂଳରେ ଅନେକ ଲୋକ ବସି
ପରୀକ୍ଷା କରି ଦେଖୁଛନ୍ତି ତାʼ କଟା ହାତକୁ
ଆଖିରେ ଆଖିରେ ସେ ଗଣିନେଉଛି ଦଶଟା ଆଙ୍ଗୁଠିକି,
କି ଉଜ୍ଜ୍ୱଳ ସେଗୁଡ଼ିକ, ଗୋଟିଏ ଗୋଟିଏ ଦିନ ପରି !
ବେଶ୍ ସମୟ ଅଛି ଜାଣି ନେବାକୁ
କେଉଁ ପାଦଶବ୍ଦ ଆଣୁଛି ଗ୍ଲୁʼ କପ୍,
କେଉଁ ଶବ୍ଦ ବା ଫାଶୀଖୁଣ୍ଟକୁ ଯିବାର ପରୱାନା ।

( ଏକଷଠ )

ବର୍ତ୍ତମାନ ସେ ଗାଧୋଇ ସାରି
କଳା ପୋଷାକ ଓ ମୁଖା ପିନ୍ଧି ସାରିଲାଣି;
ଅନ୍ୟ ଜଣକ ଆସି ପହଞ୍ଚିଯିବ ଏଥର ।
ଗୋଟାଏ ସଲ୍ଲମ୍‌ରେ ସନ୍ତୁଷ୍ଟ ହୋଇଯିବ ପବନ,
ଉଡ଼ିଯିବ ଶୂନ୍ୟକୁ, ବନ୍ଦ କବାଟ ଯେମିତି
ଦୁଇ ଫାଳ ହୋଇ ଭାଙ୍ଗିଯିବ ପାଦତଳେ ।
ସେ ଠିକ୍ ଉଠିଯିବ ଗଛ ଉପରକୁ,
ଫଳଟିକୁ ଅବଶ୍ୟ ଫେରାଇ ଦେଇ ହେବ ନାହିଁ ।

( ବାଷଠ )

## ଶବ ସତ୍କାର

କେହି କେହି ଆପଣଙ୍କୁ ଦୋଷ ଦେଲେ
ସ୍ୱାସ୍ଥ୍ୟର ଯତ୍ନ ନେଲେ ନାହିଁ ବୋଲି,
ଅସୁସ୍ଥତାରେ କଠୋର ପରିଶ୍ରମ କଲେ,
ଠିକ୍ ବେଳରେ ହସ୍ପିଟାଲ୍ ଗଲେ ନାହିଁ ବୋଲି ।
କେହି କେହି ଆପଣଙ୍କୁ ପ୍ରଶଂସା କଲେ,
ଆପଣଙ୍କ କୃତିତ୍ୱ ବଖାନ କଲେ,
ଆଜି କେହି କେହି ଚୁପ୍ ଚାପ୍ ଠିଆ ହେଲେ
ସିଗାରେଟ୍ ଟାଣିଟାଣି ।

ଦୂରରେ, ଘର ଭିତରେ
ଆପଣଙ୍କ ଶବ ପଡ଼ିଥିଲା
ଫୁଲ ଘେରରେ,
ନିସ୍ପନ୍ଦ, ନିରାପଦ
ଯେ କୌଣସି ପ୍ରକାର ବର୍ଣ୍ଣନାରୁ ।
ପରିବାରର ଲୋକେ
ମୁଣ୍ଡ ବାଡ଼େଇ କାନ୍ଦୁଥିଲେ,
ଧୂପ କାଠିର ଧୂଆଁ ଇତସ୍ତତଃ ହେଉଥିଲା ପବନରେ ।

( ୧୯୪୦ )

ଆମେ ସମସ୍ତେ ଚେଷ୍ଟା କଲୁ
ନିଜ ନିଜର ଅଧିକାରକୁ ଆପଣଙ୍କୁ ନେଇଯିବା ପାଇଁ,
ଆମ ପାଦରେ ଯେହେତୁ ଗତି ଥିଲା, ଶବ୍ଦ ଥିଲା ମୁହଁରେ ।
ଯାହା କରୁଛି ନିର୍ବାକ୍ ଓ ନିସ୍ପନ୍ଦ କାହିଁକି
ଆମ ଲୋଭକୁ ଏମିତି ଉଗ୍ର କରେ ?

( ରଭୁଷଠି )

## ଅହଲ୍ୟା

ସେ ଅନୁଭବ
ନା ନିଜସ୍ୱ ଲାଳସାର
ନା ଅନ୍ୟର ବଳାତ୍କାରର ।

ତାଙ୍କ ଚହ୍ଲା ମୁହଁ ଦିଶୁଥିଲା
ସବୁବେଳେ ଯେମିତି ଦିଶେ,
ଗମ୍ଭୀର, ଉଜ୍ଜ୍ୱଳ ।

ମୁଁ ଖାଲି ପଚାରିଥିଲି, ମନେଅଛି,
ଏତେ ଶୀଘ୍ର ଆପଣ ଫେରିଆସିଲେ ?
କିଛି ଗୋଟାଏ ଉତ୍ତର ସେ ଦେଇ ଦେଇ
ହାତ ଗୋଡ଼ ଧୋଇଲେ,
ମୋ ହାତ ଧରି ନେଇଗଲେ କୁଶଶଯ୍ୟାକୁ
ସନ୍ତର୍ପଣରେ,
ହୋମାଗ୍ନି ସଜାଇଥାନ୍ତି ଯେମିତି
ଅବିଚଳ କଠୋର ଶାନ୍ତିରେ ।

ଆଖି ବୁଜି ହୋଇ ଆସିଲା,
ପଦ୍ମଫୁଲ ବୁଜି ହୋଇଯାଏ ଯେମିତି

ସୂର୍ଯ୍ୟଙ୍କୁ ଘୋଡ଼ାଇ ଦେଇ, ସୂର୍ଯ୍ୟଙ୍କ ସ୍ମୃତିକୁ;
ମୁଁ ଖଣ୍ଡେ ବିଜୁଳି ଭଳି ଚମକିବାରେ ଲାଗିଲି ।
ଚହଲା ପାଣି ସ୍ଥିର ହୋଇଯିବା ଆଗରୁ;
ମୁଁ ମୋର ପ୍ରତିବିମ୍ବରେ ମିଳାଇଯିବା ଆଗରୁ,
ସେ ମୋର ନାଁ ଧରି ଡାକିଲେ
ଆଶ୍ରମ ବାହାରେ
ମାଳତୀ ଲତାର ମୂଳ ଶୁଖିଲା ଦେଖି
ସାମାନ୍ୟ ତିରସ୍କାର କଲେ ।

ମୁଁ କିନ୍ତୁ ବୁଝିପାରିଲି ନାହିଁ,
ବୁଝି ପାରିଲି ନାହିଁ କୋଉ ପାଦଶବ୍ଦ
କୋଉ ସ୍ୱର ସତ୍ୟର ।

ମୁଁ ଚୁପ୍ ହୋଇ ଠିଆହେଲି ।
ମୋ' ସ୍ୱର କୁଣଖଣ୍ଡିଏ ପରି ମିଳାଇଗଲା
ତାଙ୍କର ପ୍ରଜ୍ୱଳିତ ଅଭିଶାପରେ ।

ସେ ନଆଁ କ'ଣ ମୋ ଅଙ୍ଗୀକାର
ଚିରଚରିତ ପୁରସ୍କାର ?
ଦକ୍ଷିଣ କ'ଣ ଦକ୍ଷିଣ, ଉତ୍ତର ଉତ୍ତର
ବର୍ଷଣୋନ୍ମୁଖ ମେଘର,
ଅପେକ୍ଷାରତ ପଥର ଖଣ୍ଡର ?

କିଏ ଜାଣେ କୋଉ ପାଦର ଆଘାତରେ
ପୁଣି ମୁଁ ମଞ୍ଜରି ଉଠିବି

( ଛଅଷଠି )

ଅଶୋକତରୁ ।
ସେ କନ୍ୱ ଆଜ ନଥିବେ,
ଆଶ୍ରମ ଖାଲି ପଡ଼ିଥିବ
ତାଙ୍କ ନିଜସ୍ୱ ସତ୍ୟ ପରି, ଅଭିଶାପ ପରି ।

( ଶତଷଠି )

## ଶକୁନ୍ତଳା

ସେ ମତେ ଚିହ୍ନିଲେ ନାହିଁ, ଚିହ୍ନିପାରିଲେ ନାହିଁ,
ଅସହାୟ ଭଙ୍ଗୀରେ ପଚାରିଲେ ନାଁ ଗାଁ ଠିକଣା ।
ମୋର ଅଭିମାନ କଠିନ ହୋଇ ଆସୁଥାଏ,
ମୁଁ ଯେମିତି ଜଡ଼ କଲି ସେ ଫେରିବନ
ସେ ମତେ ଯାଗନୀ ବୋଲି ଭାବିଲେ କି କ'ଣ
ସଭାସଦଙ୍କୁ ଚାହିଁ ହୋ ହୋ ହୋଇ ହସିଲେ,
ତାପରେ ବୋଧେ ତାଙ୍କର ସଦ୍‌ବୁଦ୍ଧି ହେଲା, କହିଲେ
ସସମ୍ମାନ ମତେ ବିଦା କରିଦେବାପାଇଁ ଖିଆପିଆ ପରେ ।

ଯେତେ ସବୁ ଦୂରତାର ଧାରଣା କରିଥିଲି, ଭୁଲିଗଲି ।
ହରିଣ ଛୁଆଟି ପରି ଯେ ହିଁ ଚାହିଁ ରହିଲେ ମୋ ଆଡ଼କୁ,
ସଭାକକ୍ଷ ବାପାଙ୍କ ଆଶ୍ରମ ପରି ଦିଶିଲା,
ପାହାଚରେ ଓହ୍ଲାଉଚ ମନେହେଲା ତାଙ୍କର ସେ ଆଖିଯୋଡ଼ିକ
ଅନସୂୟା ପ୍ରିୟମ୍ବଦା ପରି ମୋର ପାଖେ ପାଖେ ।
ସେ ତାଙ୍କ ତୂଣୀରର ଶର ଖଣ୍ଡେ, ଧନୁରେ ଯୋଖିସାରି ସେ
ସ୍ଥିର କରିପାରୁ ନାହାନ୍ତି ଲକ୍ଷ୍ୟସ୍ଥଳ ମୃଗ କି ମୟୂର ।

ତେଣୁ ମୁଁ ସେଠି ଅଟକିଗଲି ଅନେକ ଦିନ ଧରି,
ମୋ ନୂପୁର ଶବ୍ଦରେ ଭର୍ତ୍ତି ହେଲା ରାଣୀହଂସପୁର,

କ୍ଳାନ୍ତ ଶ୍ରାନ୍ତ ପାଉଧରୁ ସେ ଫେରୁଥିବେ, ମୁହଁ ଧୋଇବେ ଝରଣାରେ,
ମୁଁ ଗୋଟେ ଝରଣା ପରି ବୋହିଯାଉଥାଏ
ତାଙ୍କ ଚଉର୍ଦ୍ଦିଗ ସୂଚିଭେଦ୍ୟ ଅନ୍ଧାର ଭିତରେ,
ମୁଁ ତାଙ୍କ ମନଲାଖି ଗୀତ ଗାଉଥିଲି,
କେବେ ବି ଚାହୁଁନଥିଲି ଦେଖିବାକୁ
ଟିକିଏ କ୍ଷେତ୍ର ସୂର୍ଯ୍ୟାଲୋକର କୋଳରେ ଝୁଲି କେମିତି
ଚନ୍ଦ୍ରାଏ ଲୁହ ମୋର ଚକ୍‌ଚକ୍‌ କରୁଚି ଗୋପନରେ ।

ଦିନେ ପାହାନ୍ତି ପହର । ପୋଡ଼ା ସଳିତା ଗନ୍ଧରେ
ବାସ୍ତୋର ଶଯ୍ୟନ କକ୍ଷ, ମୁଁ ତାଙ୍କ ଭାରି ହିଦର ବାହୁ ବେଷ୍ଟନୀରୁ
ଖସି ପଳାଇ ଆସିଲି ଶଯ୍ୟା ନିକଟକୂଳକୁ;
କେଉଟକୁ କହିଲି ଡଙ୍ଗା ଫିଟା, ପକାଉ ନେ' ଜାଲ,
ମାଛକୁ କହିଲି ଉଠ୍‌, ବେଳ ହେଲାଣି ଧରାପଡ଼ିବାର ।
ମୋ ପେଟର ସାତତାଳ ପାଣିପଙ୍କ ଭିତରେ ଲୁଚିଥିବା
ତାରାଟିକି କହିଲି, ଆ' ଖେଳିବା, ସିଂହକୁ ଡାକି ଆ,
ବହୁ ଦୂରରୁ ଶୁଭିଲା ବାପାଙ୍କ ମନ୍ତ୍ରୋଚ୍ଚାରଣ
ମୋ ତରଳ ଅଭିମାନର ପ୍ରତିଧ୍ୱନି ପରି ।

ମୂଳରୁ ହିଁ ମୁଁ ଜାଣିଥିଲି ସେ ଏମିତି ଆସିବେ
ଦାଉ ଦାଉ ଖରାରେ ଜଳି ଜଳି ମୁହଁ ରଙ୍ଗା କରି,
ଝାଳ ବୋହି ଯାଉଥିବ କପାଳରୁ, କାନମୂଳରୁ,
ଆମ ଦୁହିଁଙ୍କର ଦୋଦୋଶଯ୍ୟା ଗୋଟିଏ ସତ୍ୟ ଆଗରେ
ଅଟକିଯିବେ ଝପ୍‌କରେ, ମୁକୁଟ ଓହ୍ଲାଇ ଦେବେ;
ଧନୁ ତୂଣୀର ସମେତ ସମର୍ପି ଦେବେ ନିଜକୁ,
ମୁଁ କହିବି ମୋର କେବଳ ମୁହଟି ଦରକାର ।

( ଅଶ୍ୱତ୍ଥ )

## ନାଉରିଆ

କେହି କେହି ଟଙ୍କାର ଲୋଭ ଦେଖାଇଲେ,
କିଏ ଧମକାଇଲା, ଛୁରି ବାହାର କଲା ଅଣ୍ଟାରୁ,
କେହି ତା'ର ବିବେକ ନାହିଁ କି ବୋଲି ପଚାରିଲା,
ରାତି ଏତେ ହେଲାଣି
ପିଲାଛୁଆ ଅନାଇଁ ବସିଥିବେ ଘରେ ।

ନାଉରିଆ ଡଙ୍ଗା ଫିଟାଇବାକୁ ନାରାଜ ।
ଅନ୍ଧାରରେ ତିଆରି ମୂର୍ତ୍ତି ଟାଏ ଅନ୍ଧାରରେ ବସିଚି ।
ମିଞ୍ଜି ମିଞ୍ଜି ଲଣ୍ଠନ ପୋଷା ହଂସ ପରି ଭାସୁଚି
ଡଙ୍ଗାରେ, ପାଣିରେ ।

କେହି ଖୁଣ୍ଟରୁ ଦଉଡ଼ି ଫିଟାଇବାକୁ ଚେଷ୍ଟା କରୁଚି,
କିଏ ଉଠାଇ ଆହୁଲା ଧରିଲାଣି ତ
ଆଜ କିଏ କାତ ଦୋଷାରେ ଆଣୁଚି ଡଙ୍ଗାରୁ କୂଳକୁ ।
କେହି କିନ୍ତୁ ଡଙ୍ଗାକୁ ପାଦ ବଢ଼ାଇ ପାରୁ ନାହାନ୍ତି
ଅନ୍ଧାର ପାଣି କୁମ୍ଭୀର ମେଘ ପବନ ଉପରେ ।

ଆଜ ବୁଢ଼ାଏ ଗାଳି ଧମକ ଛୁଟି ହୋଇଗଲା
ନାଉରିଆ ମୁହଁରେ,

( ସବୁରି )

ତା'ର ଆଖିପତା ବୁଜି ହୋଇ ଆସିଲା ।
ଆଗଭଳି ଚୁପ୍‌ଚାପ୍, ନିସ୍ପନ୍ଦ ।
ପବନରେ ଟିକିଏ ଉଡ଼ିଗଲା ଗାମୁଛାର କାନି ।

ହଠାତ୍ କିଏ କହିଲା ମରିଯାଇଛି ତ ବୁଢ଼ା !
ବରଗଛରୁ ଖସିପଡ଼ିଲା ପତ୍ରଟିଏ ।
ସେମାନେ ଫାଶୋରି ଗଲେ ପିଲାଛୁଆ, ଘରଧନ୍ଦା, ବ୍ୟବସାୟ ।
ଅଣ୍ଟାକୁ ବାନ୍ଧିହୁଡ଼ି ଗଲା ଛୁରି, ପାଟିର ଡଙ୍ଗାକୁ
ଗାଳି ଧମକ ଅନୁନୟ ପୋଷା ହଂସ ପରି ।

ସେମାନେ ଅଣ୍ଡାଳି ଗଲେ ଚଉଦିଗ ଅନ୍ଧାରରେ,
କାଠିକୁଟା ଶୁଖିଲା ଡାଳପତ୍ର ଜମାକଲେ,
ଦଶଦିଗପାଳଙ୍କୁ
କାନଫଟା ଶବ୍ଦରେ ଡାକ ଦେଲେ,
ସାକ୍ଷୀ ରଖି ଉଠାଇ ଦେଲେ ବୁଢ଼ାକୁ ନିଆଁ ଉପରକୁ ।

ପାଣିପରି ଉଚ୍ଛୁଳିବାରେ ଲାଗିଲା ନିଆଁ ।
ସେମାନେ ବସି ରହିଲେ କିଛି ଦୂରରେ ।
ଏମିତି କାହିଁକି କଲେ ଭାବିବାରେ ଲାଗିଲେ—
ରାଗରେ, ବିଫଳତାରେ, କର୍ତ୍ତବ୍ୟବୋଧରେ ?
ପାପ କଲେ ନା ପୁଣ୍ୟ କଲେ ?
ବୁଢ଼ାକୁ କିଏ ମାରିଲା ?

ମିଞ୍ଜି ମିଞ୍ଜି ଲଣ୍ଠନକୁ କୋଡ଼ରେ ଜାକି
ଡଙ୍ଗା ଭାସିଗଲା
ଏକା ଏକା
ପାଣି ପବନ ନ ମାନି
ଆଉ କୂଳ ଅ ଡ ।

( ଏକପ୍ରଶ୍ନ )

## ନଈବାଲିରେ ଖରାଦିନଆଁ ରାସ୍ତା

ନଈବାଲିରେ ଖରାଦିନଆଁ ରାସ୍ତା ।
ଫାଟିଲ ଗାଲ ଟିଅ ପାଉଥିଲା ଟ୍ରେକର୍‌ରେ
ପାଙ୍ଗରେ ସାନ ବଢେଇ ।
ତଇବ ବୁଝିଲା ନାଇଁ ଯୁବା ଦେହର ବନ୍ଧେଇ
ଅଟନ ନଈବଣ୍ଡିରେ ମୋହ୍ନ ହୋଇଗଲା ଗାଁ,
ମିଶିଲେ କାହ୍ନି କୁଆଡ଼େ ପାଇ ସମୁଦ୍ରରେ ।

ଚମକ ପୂଅ ଧରି ଫଡ଼ଥିଲା ସେଇଠି
ନର୍ତ୍ତିଆଣୀର ଲଙ୍ଗର୍ ନେଇ ଫଳାଉଥିଲା ବେଳେ,
ଜର୍ମିକ ଚନ୍ଦ୍ରମଣ୍ଡଳ ଝରଉଥିଲା ଆକାଶରେ,
ଫଳରୁ ପୁଲସ୍‌ଙ୍କ ଯୁଗୁର ଶୁଭିଲା,
ହାତବାକ୍ସରେ ଯ ଶୁଣିଲା ନାଇଁ ଦାରୋଗା,
ହାତକଡ଼ ଫକେଇ ଚିହ୍ନି ନେଲା ।

ବାର ତେର ବର୍ଷର ଟୋକା ତା' ବୁଦ୍ଧି ଦେଖ,
ଦନ ଏଗାରଟା ହେବ,
କୂଳକୁ ଧାଇଁଆସି ହୁରି ପକେଇଲା—
ଧାଇଁ ଆସ ଧାଇଁ ଆସ
ଭଜାରୁଣୀ ବାପ୍ପାଣୀ ଝୁଅ ଜନ୍ମ କରଦେଇ ଯୁଝୁଛି

( ବାସ୍ତବ )

ବୁଢ଼ା ଆଡ଼କୁ । ବୁଢ଼ାଟାର ଆଖି ଫିଟିନ ଏପାଏଁ,
ବାଲି ଚାଲି ଗଲାଣି, ଶିଟିମିବ, ଧାଇଁଆସ ।
ଝଣ୍ଟୁଆ ଗୋବର୍ଦ୍ଧନ ମା' ପିଲାଙ୍କୁ ଉଠାଇ ଟେକନେଲା
ଆମ୍ବତୋଟା ଉପର ଡାକ୍ତରଙ୍କ କ୍ୱାଟର୍‌କୁ ।

ନଈବାଲିରେ ଖରାଦିନଆଁ ରାସ୍ତା
ଏମାନଙ୍କ ପାଇଁ । ତମେ ଯିଏ
ନଈ ଆରକୂଳରେ ଘର କରି ରହିଚ,
ମୁଁ ଯଦ ତମକୁ କେବେ ଡାକେ ତମେ କ'ଣ
ସେଇ ରାସ୍ତାରେ ଆସିବ ?
ଲିପାପୋଛା ହୋଇ ନଥିବ ଦାଣ୍ଡ ମୋର,
ସଜାସଜ ହୋଇ ନଥିବ ଘର ଦ୍ୱାର,
ପୂର୍ଣ୍ଣକୁମ୍ଭ ବସି ନଥିବ,
ତେବେ ବି ତମେ କ'ଣ ସେଇ ରାସ୍ତାରେ ଆସିବ ?

ମୋର ତ
ଏମିତି ସେମିତି ବେଳ ନୂହ କେତେବେଳେ,
ଟ୍ରେକର୍‌ରେ ଗୁଡ଼ ଆସୁଚି ଚପଲ୍ କେବେ ତ
କେବେ ଇଦ୍ରରେ କଞ୍ଚା ରକ୍ତ ଲାଗିଚି,
ହଂସା ଜଡ଼ଯାଉଚି ଶୋଷରେ ।
ତମେ ପଛକେ ଆଜ କଏ ହୋଇ ଆସ,
ଡାକବା କଥା ଡାକୁଥିବ,
ନଈବାଲିରେ ଝରାଦିନଆଁ ରାସ୍ତା ପରି ପଡ଼ି ରହିଥିବ ।
ତମର ଇଚ୍ଛା ଯେତେ
ସେତେ ଦାଜ ।

( ତେଯ୍ୱସ୍ତବ )

## ସ୍ମରଣ ବିସ୍ମରଣ

ମୁଁ ଜାଣିଥିଲି ତମକୁ ଭୁଲିଯିବି ଏମିତି ।
ଏଇ ସମୟ ଆସିଯିବ ଅକସ୍ମାତ୍,
ହାଡ଼, ମାଂସ, ରକ୍ତ ଭିତରେ
ଆଜି ଗୋଟାଏ ଦେଶ ଜେଇଁ ଉଠିବ,
ମୋର ପ୍ରିୟତମ ମୁହୂର୍ତ୍ତଗୁଡ଼ିକ
ଗୋଟିକ ପରେ ଗୋଟିଏ ଖସିପଡ଼ିବେ
ବିଦ୍ରୋହୀଙ୍କ ଗୁଳିରେ ।

ସେ ସବୁ ଦୂରତା ତମେ ଗଢ଼ିଥିଲ
ଅନାୟାସରେ । କବାଟ ଫାଙ୍କରୁ ମୋର
ଲସର ପସର ହୋଇ ଆସୁଥିବା ଦେଖୁଥିବା ବେଳେ ।
ଏବେ ବଣ, ସମୁଦ୍ର, ନିର୍ଜନ ଭଙ୍ଗାରୁଜା ଘର
ଅନ୍ୟ ଅନେକ ଲଳସାର ସୀମା ।
ତମେ କ୍ଷମା ନ କରିପାର, ନକର,
ତମର ବିସ୍ମରଣ ମୋ ପାଇଁ କଦମ୍ବମୂଳ ଖରାବେଳ ।

ଦୁହେଁ ମିଶି ତ ଅନେକ ଖେଳ ଖେଳିଥିଲେ
କେଜ୍ଞ କୁଆଡ଼େ ନଥିଲବେଳେ,
ତମେ ପଛରୁ ଆସି ତୁପ୍‌ଚାପ୍ ଶ୍ଯେର ପରି

( ତଜସ୍‌ସ )

ମୋ' ଆଖି ବୁଜିଦେବ,
ଆଖି ଭଲଭାବରେ ଦେଖିପାରିବା ଆଗରୁ
ମୋର ଦୁଇ ହାତରେ ଯୋଡ଼ାଏ ହାତ,
ଯୋଡ଼ାଏ ବସନ୍ତ ଋତୁ—ଗୋଟାଏ ଜନ୍ମବେଳର,
ଅନ୍ୟଟା ତମ ପାଖରେ ହାରିଯିବାର ।

କେହି ଜିତିଲେ ନାହିଁ, ଜିତି ପାରିଲେ ନାହିଁ ।
ବଣ ଭିତରେ ପଶି ଲୁଚି ଯାଉଥିବା ଘୁଇ
ତମେ ନୁହ କି ମୁଁ ନୁହେଁ;
ପାଣି ତଳେ, ଫେଣ ତଳେ ପହଁରିଯାଉଥିବା ଆଶ୍ୱାସନା,
ଭଙ୍ଗାଘର ଭିତରେ ଚଢ଼େଇର ଉଠୁଥିବା ଡାକ
ନା ତମ ପାଇଁ, ନା ମୋ ପାଇଁ ।

ମୁଁ ଜାଣିଥିଲି ତମକୁ ଭୁଲିଯିବି ଏମିତି ସନ୍ତର୍ପଣରେ,
ତମକୁ ଥରେ ମନେ ପକାଇବି ଏମିତି
ଘରୁ ବାହାରିଯିବା ଆଗରୁ ଅନ୍ୟ କାମରେ
ଜାମା ବୋତାମ ଲଗାଉଥିବା ବେଳେ,
କେହି ପାଖରେ ନଥିବେ, ଭିଡ଼ି ଧରିବି
ମୋର ସବୁତକ ପାପର ଉଷ୍ମ ଆଲିଙ୍ଗନରେ ।

( ପଞ୍ଚପ୍ରଶ୍ନ )

## ଜେଜେ

ଏଇ ଭିଡରେ କୋଉଦିନ ହଜିଯିବ କି ହଠାତ୍
ବାଡ଼ି ଦୁଆର ମେଲା କରି ଖସିବେଳେ
କାହାକୁ କିଛି ନ କହି,
କିମ୍ବା ଗଛରୁ ଅଜାଡ଼ି ହୋଇ ପଡ଼ୁଥିବ ପାଚିଲା ପତ୍ର,
ଖାଁ ଖାଁ ଗୋଡ଼ଉଥିବ ଶୁଖିଲା ନଈ ନାଳ,
ଭଙ୍ଗା ଶଗଡ଼ ଆଣ୍ଠେଇ ପଡ଼ିଥିବ ଖଳା ଦାଡ଼ରେ ?

ତମେ ଏମିତି ଥିର୍ ଥିର୍ ଝୁଲୁଛ ଢୁଳି ଢୁଳି
ରଜାଙ୍କ ପାଟହାଣ୍ଡି ପରି ଗାଁ ଦାଣ୍ଡରେ,
ଡର ଲାଗୁଛି ଦେଖିଲେ,
ତମର କ'ଣ ବେଳ ହେଲାଣି ଉପରଓଳି ଗାଧୁଆ ପାଇଁ,
ଖସ ଚୁଇର ମୁକୁଟ ପିନ୍ଧି କୁଆଡ଼େ ବାହାରିଛ କି ?

ତମେ ଏମିତି ନଡ଼ିଆ ବାହୁଙ୍ଗା ପରି ଖସିଯିବନି ତ
କୋଉଦିନ ଖସିବେଳେ ଆମର ଅଲକ୍ଷ୍ୟରେ ?
ଆମ ପାଖରେ ଆମର ଡର ଥାଉ
ଚଳିବର୍ଷର ପଡ଼ାବନ୍ଧ ପରି, ଶୁଖିଲା ନଡ଼ିଆ ପରି
ଆମ ପାଖରେ ଆମର ସନ୍ଦେହ ଥାଉ,
ଶୁଖିଲା ପୋଖରୀ ଥାଉ ମନ୍ଦିର ବେଢ଼ା ବାହାରେ ।

( ଛଅପ୍ରସ୍ଥ )

ଆମ ଦ୍ୱାସ୍ୟ ପରିହାସର ବଚନିକା ଜାଲରୁ ମୁକୁଳିଗଲେ,
ଥରେ ଗଲେ ତମେ ଆଉ ବାହୁଡ଼ିବନି କେବେ;
ବେସର ବାସ୍ନା ଯେମିତି ଚହଟୁଥିବ ଗାଁ ଦାଣ୍ଡରେ
ବଳଦ ବାହୁଡ଼ୁଥିବେ ବିଲମାନରୁ,
ଦୁଙ୍କା ବଦାଣ ଘିଲୁ ଖାଇ ଯାଉଥିବେ ଭଣ୍ଡ,
କାନ୍ଥ ଖୁଣ୍ଟରେ ଡବଣ କଳା ଜମି ଯାଉଥିବ ।

ଅନେକ ଦିନୁ ଖସିଗଲଣି, ପଳାଇଲଣି ତମେ,
ପୋଖରୀରେ ଲଜ୍ଜା ଗୁଡ଼ି ଶେଉଳ ପହଁରୁଚି
ଅନ୍ଧାର ଦୌଡ଼ି ଆସୁଚି ପର୍ବତରୁ,
କହିବ ଦେଉଳ କୁଆଡ଼େ ବାହାରିଥିଲ ସେଦିନ ଖରାବେଳେ
ଧର୍ମ କଲ ନା ପାପ କଲ, ନା ଖାଲି
ବାଙ୍କା ପଡ଼ିଥିବା ବେଳତକ ପୂହାଇ ଦେଲ ପୋଖରୀ ପାହାଚରେ ?

( ସଚ୍ଚିଦାନନ୍ଦ )

# ସୋମନାଥ

(ଏକ)

ତୁନି ହୋଇଯା', ତୁନି ହୋଇ ଯା', ସୋମନାଥ, ଲାଜ କଥା
ଏତେ ଲୋକରେ, ଏତେ ଦୂର ବସ୍ତୁଡ଼ ପଡ଼ିଥିବା ଆଲୁଅରେ
ତୋର ଏମିତି ପାଟି କରିବା ବଡ଼ ଲାଜ କଥା, ତୁନି ହୋଇଯା' ।

କଏ କହିଲା ତୋର ସୀମା ତୁ ଦେଖି ପାରିଲୁଣି ?
ଏଇ ପର୍ବତ ପରେ ବି ଆଉ ଗୋଟାଏ ପର୍ବତ, ପୁଣି ଆଉ ଗୋଟାଏ···
ଆହୁରି ଅନେକ ଶବ୍ଦ ଅଛି ନଈର, ଅନେକ ଭଙ୍ଗୀ ଅଛି ।

ଆମ ଆଗରୁ ଅନେକେ ଯାଇଛନ୍ତି, ସମସ୍ତେ ଫେରିବେ
କାଲି ସକାଳୁ ନିଜ ନିଜର ଘର ଓ ସ୍ତ୍ରୀ ପିଲାଙ୍କ ପାଖକୁ ।
ଯାହା ପାରୁଛୁ ଛୁଇଁ ଯା', ଆଶା କରନା ସୁନା ପାଲଟିଯିବ ।

ବୁଝୁଛି ତୋର ଆକାଂକ୍ଷିତ ଠିକଣାରୁ ଚିଠିଟି ଆସିଛି,
ଏଇ ଲଫାଫା ଚିରିବା ଆରମ୍ଭ କଲୁ ମାତ୍ର, ଅଟକିଗଲୁ ,
କେମିତି ବା ଜାଣିଲୁ ଭିତରେ କ'ଣ ଅଛି, କ'ଣ ଲେଖା ହୋଇଛି ?

ପକ୍ଷୀ ଉଡ଼ି ଯାଉଛି ନଈର ଏପାରି ସେପାରି,
ଥଣ୍ଟ ଘଷୁଛି ଗଛ ଡାଳରେ, ଝାମ୍ପ ମାରୁଛି ପାଣିକ ।
ଖୁବ୍ କମ୍ ଭଙ୍ଗୀରେ ସବା ଶେଷ ଗୀତଟି ଗାଇଦିଏ, ସବୁଥିରେ ନୁହେ ।

( ଅଗଷ୍ଟ )

ଖୁବ୍ କମ୍ ଶବ୍ଦର ସେ ଯୋଗ୍ୟତା ଥାଏ, ଯେଉଁଥିରେ
ତୁ ତୋର ଅସ୍ଥି ଗଣ୍ଡାକୁ ଲେଖିଦେଇ ପଳାଇ ଯାଇପାରୁ
ମାଟି, ପାଣି, ପବନ, ଆକାଶ ଓ ନିଆଁର ନାଆଁରେ ।

(ଦୁଇ)

କଣ୍ଟା ବାଡ଼ରୁ ଡେଇଁ ଡେଇଁ ନେଉଳ ପହଞ୍ଚଗଲା ତାଘରେ,
ଔଷଧ ଶିଶିରେ ପଶି ହୋଇଗଲା ବର୍ଷାକାଳର ନଦୀ ।
ଆତଙ୍କିତ ସୋମନାଥ, ଘଣ୍ଟ ବାଡେଇ ବାଡେଇ
ନ ହେବା କଥା ହୁଅ ନାହିଁ, ନକଲା କାମ କର ନାହିଁ କହିଲା
ଶାସନ ଦାଣ୍ଡ ବୁଲି ବୁଲି ସକାଳେ, ଦି' ପହରେ, ସଞ୍ଜରେ ।

ଭେଣ୍ଡି କଅଁଆଗି ଖୋସିବା, ନଡ଼ିଆ ବାହୁଙ୍ଗୀରେ ପଟି ବୁଣିବା,
ବାଣୀ ଦଉଡ଼ ବଳିବା, ଶାଳଗ୍ରାମକୁ ଗାଧୋଇଦେବା କଲ୍ କାମ ତ ?
ସୋମନାଥର ଉତ୍ତର ନାହିଁ, ଟିକିଏ ଭାବ କହିବ କହିଦେଇ
ସେ ପଳାଇଥିଲା ଜୋର୍ ଆଡ଼େ, ପାଶୋର ଯାଇଥିଲା ପ୍ରଶ୍ନ
ଚବ ଚବ ବିଲପନ୍ତାର ପଙ୍କୁଆ ପାଣିଗନ୍ଧରେ ବିଭୋର ହୋଇ ।

ପ୍ରଜାପତିଏ ଚୋଷାଣ ନେଲେ ମେଘଖଣ୍ଡ, କେନ୍ଦୁ ଗଛରେ
ଟୁପ୍ ଟାପ୍ ଫୁଟିଲେ କଇଁଫୁଲ , ଶୂନ୍ୟରେ ଉଡ଼ଗଲେ ଗେଣ୍ଡା ।
ସୋମନାଥ ବୁଝିଲା ତା' ଅସହାୟତା, ବୁଝିପାରିଲା ସେ
ସ୍କୁଲଘର ରିହର୍ସାଲ୍‌ରେ କେବଳ ସେ ଖଣ୍ଡା ବୁଲାଇ ପାରେ,
ରାବଣର ମୁଣ୍ଡ ଖସାଇ ପାରେ ଗୋଟି ଗୋଟି, ଦୁର୍ଯ୍ୟୋଧନର ରକ୍ତ ପିଇପାରେ ।

ସେଦିନଠୁଁ ସୋମନାଥ ସହିଲାଣି ଅନେକ କଷଣ, ଅନେକ ବାଙ୍କ ବୁଲିଲାଣି ।
ହତଭମ୍ବ ହେବା ବା ବିଭୋର ହେବା ଏକା କଥା ବୁଝିଲାଣି,
ନିଜ ନିଜର ଯାଗା ବଦଳାଇ ଦେଇ ଯୋଡ଼ାଏ ପୃଥିବୀ

( ଅଣାଅଶି )

କେବେ କି ରୂପ ଧରୁଚନ୍ତି, କ'ଣ ସେ ହେଉଚନ୍ତି !
ଜଲ୍‌ଦି ଜଲ୍‌ଦି ଲୁଗା ପିନ୍ଧି ସେ ହସି ହସି ବାହାରିଯାଉଚି ଘରୁ
ଆଜି କି ଅପରୂପ ଶୋଭା ହୁଏତ ଖେଲୁଥିବ ପର୍ବତରେ !

( ତିନି )

ସୋମନାଥ ସେଦିନ ଯେଗାଢ଼ରର ମାଲ ପରି
ବାହାଡ୍ରୋଟ ମାରି ମାରି ଆସି ପହଞ୍ଚିଲା ସନ୍ଧ୍ୟାବେଳ ଛକରେ,
ହେକ୍‌କଣ କରି କୁଣ୍ଡା ହୋଇଚି ବାଳ, ପାଉଡ଼ର ମୁହଁରେ,
ଚଢ଼ି ପିନ୍ଧା ସୋମନାଥ ଆସିଲା, ବେକରେ ମଲ୍ଲୀମାଳ,
ଗୁଲ୍, ଗୁଲ୍, ଗୁଲ୍ ସମସ୍ତେ ଆଜ ଖୁଏଇବ (କ'ଣ କି ରେ ?)
ପଞ୍ଜାବୀ ହୋଟେଲ୍‌ରେ, ଆଜ ଗଡ଼ଜଣିକ ଆସିଚି ।

ଖୁବ୍ ଗୋପମାସ୍ତ ନାଁ ଗାଁ ଚଣେଣ ସେ ଗଡ଼ର,
କହିବ ନାଇଁ ସେ ସେଠି ସାଇକେଲ୍ ସିଟ୍ ଉପରେ କହୁଣୀ ରଖି,
ସମସ୍ତେ ପ୍ରତିଶ୍ରୁତି ଦେବେ ତ ପୁଲସ୍ ଜାଣିବ ନାଇଁ,
ଇନ୍ଦ୍ର, ଚନ୍ଦ୍ର କେହି ଜାଣିବେ ନାଇଁ ସେ କ'ଣ ପାଇଯାଇଚି ଅଗୁନକ ?
ସାଙ୍ଗମାନେ ସୋମନାଥର ସର୍ତ୍ତ ମାନିନେଲେ, ହସି ହସି ଯେଝା ବାଟରେ
ଚେନାଚୁର୍ ବାଳର ଘଣ୍ଟି ଶବ୍ଦ ହଜିଯାଉଥାଏ ଗଳିମୋଡ଼ରେ ।

କହ କହରେ ସୋମନାଥ, କହ ସୋମ, କହ, କହିଦେ' ନାଥ—
କ'ଣ କହିବ ? କ'ଣ ତା'ର ହୋଇଚି ? କ'ଣ ସେ ପାଇଚି ?
ସୋମନାଥକୁ ଲଗିଲା ବେକ ଉପରକୁ ତା'ର ଫାଙ୍କା, ଖାଲି
ଯୋଡ଼େ ଆଖି ଜଳ ଜଳ ଚାହିଁଚି, ଯୋଡ଼େ କାନ ଝୁଲୁଚି ଶୂନ୍ୟରେ,
ପବନ ପିଠି ସାଉଁଳାଉଚି, ଅଣ୍ଡା ଯୋଡ଼ିଅସୁଚି ନାହିମୂଣ୍ଡାରେ,
ପାଦେର ଉପର ଡାଳ ହଲିବାରେ ଲଗିଚି, ଆଲୁଅ ଜଳୁଚି ।

( ଅଣି )

ସୋମନାଥ କହୁଚ ମୋ ପାଇଁ ତମେ ସବୁ ଗୋଟାଏ ସ୍ୱପ୍ନ ଦେଖନ୍ତନ—
ଗତ ଗାଡ଼ରେ କେହ୍ବ ଜଣେ ଆସନ୍ତା ମୋ' ଗ୍ଲଛନଦକୁ,
କବାଟ ବାଡ଼ାନ୍ତା, ଝଣ ଝଣ କରନ୍ତା ଜଞ୍ଜିର, ମୁଁ ଜାଣିନ୍ତି ଣି
ଡେର କରନ୍ତି କବାଟ ଖୋଲବାକୁ, ଖେଲସାର କହନ୍ତି
ଆପଣ···! ଓହୋ, ସୋମନାଥବାବୁ ! ଆର ସାଙ୍କୁ ସା'ନ୍ତୁ—
ଏଇ ସ୍ୱପ୍ନ ପରେ ତ ଆଜ ଗୋଟାଏ ସ୍ୱପ୍ନ ଥିବ, ସେଇ ସ୍ୱପ୍ନ ।

ଆଜ ସେତେବେଳକୁ କେହ୍ବ ନଥିଲେ ଆଖପାଖରେ,
ସହରର ଗଳକନ୍ଦ, ରାଜପଥ, ଇତହାସର ଶିବ ଧମନୀରେ
ଧାଇକେଲମାନ ଛୁଟିଥିଲେ ତୀବ୍ର ବେଗରେ, ଈର୍ଷ୍ୟାରେ, ଅନୁକମ୍ପାରେ ।

( ଗୃତ )

ସେହନ ଇତହାସ, ଅଶୋକ, ଖାରବେଳ, ଆଲ୍ଲାଉଦ୍ଦିନ୍ ଖିଲ୍ଜି,
ଅବବାହୃତ ଶିକ୍ଷକଙ୍କ ପିଠି ଆଉଁଷା, ଧର୍ମଶାଳା ପିଣ୍ଡାରେ
ସମୁଦ୍ର ପାଣିରୁ ଛଣା ପଶ୍ଚିମା ପାର୍ବୀର ଶବ, ଦଲ୍ଲୀ ଓ ଦୌଲତାବାଦ୍
ଧୈର୍ଯ୍ୟ ଧର ଅପେକ୍ଷା କରଥାନ୍ତି ସୋମନାଥକୁ । ସୋମନାଥ

ଡାହାଣପଟ ରୁମ୍‌ରୁ ବାହାରବ ଟାଇପିଥିବା ଇଣ୍ଟରଭ୍ୟୁ ସରଲେ,
ମିଠେଇ ପର ବାଣ୍ଟିଦେବ ଅଧିକ ଅର୍ଥ, ସମ୍ଭାବନା, ଗୁରୁତ୍ୱ,
ଖପ୍‌କର ଯାଇ ବସିଯିବ ହ୍ୱଏତ ଅପେକ୍ଷାରତ, ରତ୍ନଖଚତ ଗାଡ଼ରେ ।

ଉର୍ଦ୍ଦିପିନ୍ଧା ଚପରାଶି ସେମିତି କବାଟ ଖୋଲଚ, ବାଟ ଦେଖେଇଚ,
ଗଛକଟା ହେଲାପର ଲେଟି ପଡ଼ଲା ସୋମନାଥ ବାରନ୍ଦାରେ ସମସ୍ତଙ୍କ ସାମ୍ନାରେ,
ରଙ୍ଗରଙ୍ଗିଆ ପକ୍ଷୀପରରେ କାନ କୁଣ୍ଡେଇ କୁଣ୍ଡେଇ ଉଠିଆସିଲା ସମସ୍ତ
ଟାଣି ବାହାର କଲା ସୋମନାଥର ଦେହ ମୁହଁରୁ ଏଠୁ ଛୁର, ସେଠୁ ଛୁର, ଛୀର ।

( ଏକାଅଶି )

ଯେଷ୍ଠା ଯାଗାରେ ରହିବେ ଚର୍ଚ୍ଚ, ବଟଣା, ହଂସା ଓ ଡୁଏନ୍ ସାଁ,
ସ୍ଥାଟ୍ ଏଭଳି ବାସିଦା ଘର ଯେଷ୍ଠା ଭାମରେ ଲଟିଥିବେ, ଜାଲ ବୁଣୁଥିବେ;
ବୁ ଭଏ, ଯୋମଦାଥ, ଯୋଡ଼ଦେବୁ ବାଇଗଣ ସାଙ୍ଗେ ବେଦେଲାବୁ ?
ଜଠ୍, ଜଠ୍, ଜଠ ଗଡ଼, ଗାଡ଼ଯୋଡ଼ା ନହେଲା ନାହିଁ । ତେବେ କ'ଣ

ଏଠି ଏମିତ ଗଡ଼ୁଥିବୁ ? ଗଡ଼ ଗଡ଼ ଥରେ ତ ହାଲ୍‌କା ହୋଇଯିବୁ,
ଚମକାଏ ଗବନ ଆଡ୍ଡେଇ ନେବ, ଖପାଇଦେବ ପୃଷ୍ଠାତଳକୁ ଇଣ୍ଡାସର,
ତୋର ମନେପଡ଼ିବ ନାହିଁ କ'ଣ କହୁଲେ ହାର ଖୋଲବ ଗୁମ୍ଫାର ।

( ବସ୍ତାଞ୍ଚଣି )

# ପଥର

ପଥରରୁ ପଥର, ନଈପାଣିରୁ ପଥର,
ଲଟାକୁଞ୍ଜ ଆଡ଼୍ ଆଳନ୍ଥ ପଥର ଆଡ଼କୁ ଯାହା ନିରବଧି ।
ଯେଉଁ ଭାଷା ମୁଁ ଶିଖି ପାରିନି, ଯାହା ଏଯାଏଁ ଶିଖିନାହିଁ
ସବୁର ଭିତରେ ଶୁଭେ ପଥର କଟା ହେବାର ଶବ୍ଦ ।
ପଥର ଅପ୍ସରାର ମୂର୍ତ୍ତିରେ ସ୍ମିତହାସ ଫୁଟାଇ ଫୁଟାଇ
ଘୋଟି ନଆସେ ଯେମିତି ନିର୍ଲଜ୍ଜ ବଲ୍ସୁର ଅନ୍ଧକାର ।

ଖାଲି ପାଦରେ ପଥର ପାହାଚରେ ଓହ୍ଲାଇ ମୁଁ ତଳକୁ ଯାଏ,
ସନ୍ତର୍ପଣରେ ଛୁଏଁ ନଈର ସରଳ ଦେହ,
ସେ ପାଖରେ ଘଞ୍ଚ ଜଙ୍ଗଲ ଭିତରେ ବୁଲୁଥିବା
ପ୍ରହେଳିକା ଗୁଡ଼ାକ ମୋର ନିଜର ଥିବା !
ଅନେକଦିନୁଁ ବୁଝା ସରିଚି ସେମାନଙ୍କ ଗତିବିଧି ସ୍ୱଭାବ ।
ଆସ୍ତେ ଆସ୍ତେ ମୁଁ ପାଣି ଭିତରେ ପଶେ
ଶିଉଳିଲଗା ପଥର ଖଣ୍ଡେ ଗୋଟାଏ
ବଢ଼ାଇଦିଏ ପ୍ରିୟଜନର ହାତକୁ ।

ଅନେକଦିନୁଁ ସେମାନେ ଗଲେଣି
ସୁଦୂର ପର୍ବତକୁ, ପଥର ଆଣିବାକୁ, ମନ୍ଦିର ଗଢ଼ିବାକୁ ।

( ଚେମ୍ପାଅଣି )

ସେମାନେ ବୋଧେ ଆଉ ମନେ ପକାଇ ପାରୁ ନାହାନ୍ତି
ମୋ' ପାଖକୁ ବାଦୁଡ଼ି ଆସିବାର ବାଟ ।
ମନ୍ଥରରେ ବା ମୋର କି ପ୍ରୟୋଜନ !
ସେମାନେ ହେଲେ ଫେରି ଆସନ୍ତେ, ଶିଖାଇ ଦିଅନ୍ତେ ମତେ
ପାଣିରେ ଘୋଷାରୁଥିବା ଅଦୃଶ୍ୟ ଅଷ୍ଟକାପ୍ସ ଜନ୍ତୁର
ଲାଙ୍ଗୁଳ ଧରିନେବାର କୌଶଳ ।

( ଚଉରଅଣି )

# ନଈ

ଝରକା ଭିତରୁ ନଈ ସ୍ପଷ୍ଟ ଦିଶେ,
ଆଖି ମାରେ, ହାତ ହଲାଇ ଡାକେ,
ମୋ ଭିତରେ କେଉଁଠି ପଡ଼ିଛି ବୁଲାପଡ଼ନ୍ତେ ଭଯ୍ଯ
ଅଚିହ୍ନା ବାଙ୍କ, ଗଭୀର
ଚିହ୍ନା ନଈର ।

ଛଟପଟ ଆଙ୍ଗୁଠି ଛୁଇଁଦେବାକୁ,
ବୁଡ଼ିଯିବାକୁ ପାଣିରେ ।
କେଉଁ ଗଳିମୋଡ଼ରେ ପୁଣି ଝାଡ଼ଝୁଡ଼ ହୋଇ
ଠିଆ ହୋଇଯିବ ଗଣିକା ।
ନଈ ତ ଖାଲି ମୋର ନୁହେଁ ।

ଅନେକ ବେଳ ଧରି ମୁଁ ବୁଲେ,
ଦେଖା ହୋଇଯାଏ ସେଇସବୁ କବିଙ୍କ ସାଙ୍ଗରେ,
ଯେଉଁମାନେ ଶତମୁଖ ହୋଇଥିଲେ
ନଈର ପ୍ରଶଂସାରେ,
ଗଳି ରାତିର ଜହ୍ନ ଆଲୁଅରେ ।

( ପଞ୍ଚାଅଶି )

ନକ୍ଷି କନ୍ଥ କେଉଁଠି ଲୁଚିଯାଏ ।
ବାଟ ହୁଡ଼ ହୁଡ଼ ମୁଁ ଲେଉଟିଆସେ
ମୋ’ ଘରର ଝରକା ପାଖକୁ ।
ସେ ମୋର ନହେଲେ ବି ମୁଁ ତାର ନିଜର ।
ଶିଗ କନାରେ ଗୁଡ଼ାହୋଇ କେଉଁଠି
କେଉଁ ବାଉଁଶଝାଡ଼ ଭିତରେ,
ପାଚିଲା ପତ୍ର ଓ ଫେଣର ଭଉଁରରେ
ମୁଁ ଥରଥର ଖୋଲିବ ଆଖି,
ଖୋଜିଯିବ ତାକୁ ଆଉଥରେ ।

( ଛପ୍ତାଅଣି )

# ମୃଗୁଣିସ୍ତୁତ

ମୋ' ଆଖି ଗୃହଆଡ଼କୁ ଦେଖୁଥାଏ
ଏକାବେଳକେ ଗୃହଆଡ଼ ।
ଏକେ ତ ଜଙ୍ଗଲରେ ଘର
ଦୁଜେ ପିଲ୍ଲ ଯୋଡ଼କ ଅଜ୍ଞାନ ବାଳୁତ,
ସାପ କ'ଣ, ବାଘ କଏ, କଏ ଅବା ବଳିଆ କୁକୁର
ଏଯାଏଁ ଶିଖିନାହାଁନ୍ତି ।
ଅସଜ ଦେହର ଭର,
ସେଥିରେ ପୁଣି ବିଜୁଳି ଚମକ ଭଳି
ଗୋଇଠା ମାଡ଼ ଆଉ ଗୋଟିକର ।

ମୋ' ଆଖି ତେଣୁ ଗୃହଆଡ଼କୁ ଦେଖୁଥାଏ,
ଛୁରି ପରି କାଟି ଦେଉଥାଏ
କି ଆଲୁଅ କି ଅନ୍ଧାର
କି ବୁଦା କି ପତ୍ରଗହଳ ।

ତମେ ମୋର ଏତିକ ଚେଷ୍ଟାକୁ ବି ଭାବିଲ
ଅହଙ୍କାର ବୋଲି ।
ପାଣି ପବନ କହେ ମୁଁ ବଢ଼ିଯାଉଛି ଟିକିଏ ଜୋର୍‌ରେ
ସେ କ'ଣ ପୂରା ବନ୍ଧ ଭାଙ୍ଗି ଦେଉଥାଏ ?

( ସତାଅଣି )

ଏବେ ବ ମତେ ଠିକେ ଠିକେ ସବୁ ଦିଶିଯାଉଚି,
ଏ ପାଖେ ନଅାଁର ଜଳ ଲହ ଲହ
ସେପାଖେ କୁକୁର,
ଆଗରେ ବ୍ୟାଧ, ପଛରେ ଛନ୍ଦାଛନ୍ଦି ଜାଲ ।
ମୋର ବୋଲି କେବଳ
ମୋ' ସଂସାର, ମୋ' ଭୟ
ମୋ' ହାତରେ ଟିକକ ସମୟ
ପଦ୍ମପତ୍ରରେ ଟୋପାଏ ପାଣି ପରି ।
ତମ ଆଖିକି ତ ଠିକ୍ ଦିଶୁଥିବ,
ବଡ଼ ଆଖି ବୋଲି ତମର ଖ୍ୟାତି ଅଛି ।
ସେ ଆଖିକି ସବୁ କ'ଣ ବଡ଼ ହୋଇ ଦିଶେ ?

ତମର ଯଦି ମେଘ ବର୍ଷା ପବନ
ପଠାଇବାକୁ ଇଚ୍ଛା ପଠାଇବ ତ, ରହ ।
ମୁଁ ଟିକଏ ଆଗକୁ ଯାଏ, ପଚ୍ଚରେ ବ୍ୟାଧକୁ
କାହିଁକି ରେ ତୋର ଏ ଆୟୋଜନ !
ତୋ' ପିଲାଛୁଆଙ୍କ ଭୋକ ନା ତୋ' ଗର୍ଭିଣୀ ଭଉଣୀର
ଦୋହଦ ହୋଇଚି ମୃଗ ମାଂସରେ ?

କଏ ଜାଣିଲା, ସେ ଯଦି ମୋର ଭାଇ ହୋଇଯାଏ !
ମୋର ଆଜ ନା ଆଖିର ନା ତମ ମେଘ ବର୍ଷାର ପ୍ରୟୋଜନ;
ମୁଁ ତମଠୁ' ଅଧିକା କଛି ମାଗି ପାରେ, ନେଇଯାଇ ପାରେ,
ତମ ବଡ଼ ଆଖିର ଖାତିର୍‌ରେ ।

( ଅଠାଅଣି )

# ପ୍ରଜାପତି ପ୍ରତି

ଥରେ ଦେଖିଚ ଶୁଖିଲା ଗୁବାଗଛରେ ତତେ
ନିଶ୍ଚଳ ହୋଇ ଲଗି ରହିଥିବା,
ବସ୍ତ୍ରାବୃତ, ନାନା ରଙ୍ଗରେ ରଞ୍ଜିତ ତୋ' ପକ୍ଷୀ ତଳେ
ଅଟକାଇ ରଖିଥିଲୁ ବା
ମାଟି ମୁଣ୍ଡ ହଲଇ ଶେଷଥର କହୁଥିବା ନାହିଁକୁ,
କାଳେ ମାଡ଼ିଯିବ ବୋଲି ଅନ୍ୟ ଗୁବାଗଛକୁ ।

ଆଜି ଥରେ ଦେଖିଚ ଫୁଲଙ୍କ ମେଳରେ ତୁ ଫୁଲ,
ତାରଙ୍କ ମେଳରେ ତୁ ତାରା,
ମୁଁ ତତେ ମୋଟେ ଦେଖି ନଥାନ୍ତି, ଅଟକ ନଥିଲେ
ସାପକୁ ବାଟ ଛାଡ଼ି ଦେବାକୁ ଅନ୍ୟ ଗୋଟେ ମନକୁ,
ସେ ମନ ବି ଯୋର ହୁଅନ୍ତା, ହୋଇଥାନ୍ତା
ମୁଁ ତତେ ଦେଖି ନଥିଲେ ଅତର୍କିତେ ।

ଆଉ ଯେବେ ବି ଦେଖିଚ ଖାଲି ଝଟ୍‌ପଟ୍ ଝଟ୍‌ପଟ୍
ବୁଦାରୁ ବୁଦାକୁ, କାନ୍ଥ ଉପରୁ ଭଙ୍ଗା ଖପରକୁ,
ଅଳନ୍ଦରୁ ନଳଯନ୍ତ୍ର ଦାଢ଼କୁ, ସ୍ନାୟୁରୁ ସ୍ନାୟୁକୁ,
ଅସହଜ ବୋଝରେ କାନ୍ଧ କାଟିଲଣି ବା

( ଅଣାନବେ )

ଯାଗା ଖୋଜୁଚୁ ଓହ୍ଲାଇ ଦେବା ପାଇଁ,
ସବୁଠି କଏ କହୁଚ ଏଠି ନାଇଁ, ଏଠି ନାଇଁ···

ତୁ ଏତେ ବେଶୀ ଆମ ପରି, ମଣିଷଙ୍କ ଘର ଯେ
ମନ ହେଉଚି କୁଣ୍ଢେଇ ପକାନ୍ତି ତତେ,
ତୋ' ଦେହର ରଙ୍ଗରେ ବୁଡ଼ାଇ ଦେଇ ତୂଳୀ
ଆଙ୍କି ଯାଆନ୍ତି ଆକାଶ ସାରା ପବନ ସାରା
ଯେ ସ୍ୱପ୍ନ ଯା' ଆମକୁ କେବେ ପାଶୋରି ଦେବ ନାହିଁ,
ଆମେ ଯେତେ ନିଷ୍ଠୁର, ସ୍ଥିର ହୋଇଗଲେ ବି ।

# ଫୁଲମତୀ

ବେଣୀରେ ଫୁଲ ଲଗାଇ ଫୁଲ୍‌ମଣି ଯାଉଚି
ରେଲ୍‌ଲାଇନ୍ ପୋଡ଼ା କୋଇଲା ଅରଖ ଗଛ ଟପି,
ଫୁଲ୍‌ମଣି ଯାଉଚି କଥା ରଖିବାକୁ,
ବାପ୍ନା ଜେଲରେ ମଦ୍ଧକୁଚି ଧର୍‌ବନ୍ଧଗ ।

ଫୁଲ୍‌ମତୀ ଫିଙ୍ଗୁଚି ପଥରଟେ ଉଠେଇ
ମଲା ଗୋରୁକୁ ଖୁମ୍ପୁଥିବା କୁଆ ଦଳକୁ,
ପାଣି ଆଡ଼େଇ ଆଡ଼େଇ ଡାଳ ଆଡ଼େଇ ଆଡ଼େଇ
ଏକା ଝୁଙ୍କ୍‌ରେ ଘୁଲିଚି ଫୁଲ୍‌ମତୀ ଦୂରକୁ ଦୂରକୁ ।

ସେମାନେ ତାକୁ ଆଜି ବସାଇ ନେଇଯିବେ ଟ୍ରକ୍‌ରେ,
ତାକୁ ବାଜି ରଖି ଆଜି ଖେଳ ହେବ,
ସେ ହିଁ ଠିକ୍ କରିବ ଜିଣିଲା କିଏ ଆଉ ହାରିଲା କିଏ,
ତାର ନିର୍ଦ୍ଦେଶରେ ଆଜି ସବୁ ଆଲୁଅ ଲିଭିବ ।

ଫୁଲ୍‌ମତୀ ଫେରୁଚି, ଭରି ଭରି ଦଉଡ଼ୁଚି ଚୁଲ ତା'ର ।
ଫୁଲ୍‌ମତୀ ତା' କଥା ରଖିଚି, କଥା ତ ଥିଲା
ସେ ସେମିତି ଘୁଲିଯିବ ବେଣୀରେ ଫୁଲ ଲଗାଇ
ଥରେ ମାତ୍ର ପାଣି ଜଙ୍ଗଲ ଆଖିର ଆର ପାଖକୁ ।

( ଏକାନବେ )

ଏବେ ସେ ଫେରିଆସୁଚି, ନିଶ୍ଚିତରେ ଆମର
ବ୍ୟଗ୍ର ବାହୁପାଶକୁ ଲୁଚନ୍ତେ, ତା'କୁ ଡାକ୍‌ନା, ମୂର୍ଖ,
ଆମର ନିଜସ୍ୱ ହୋଇ ନଥିବାର ଦୁଃଖ ପରି
ଏପାଖ କାଟେ ସେପାଖ କାଟେ ତା' ଅଣ୍ଟାର ଛୁରି ।

( ବଷ୍ଠାନବେ )

# ସ୍ୱୟମ୍ବର

କାଲି ରାତ୍ରିର ନିବିଡ଼ ନୀଳିମା ଭିତରକୁ ଅଗ୍ନକ
ତୁ ଆସିଥିଲୁ, ଶୁଣିଲି ।
କେବେଠୁ, ଶିଖିନେଲୁଣି ଘାସର ଅଭ୍ୟାସ,
ଏଠି ସେଠି ଉଠିବା ?

ମୁଁ ମୋର ଖୋଳ ବଜାଇ ବଜାଇ ବୁଲୁଥିଲି
ଦୁଇ ମରୁଭୂମିର ମଝିରେ,
ଯୋଡ଼େ ମଲ୍ଲ ଚଢ଼େଇଙ୍କ ମଝିରେ,
ସାମାନ୍ୟ ପାଉଁଶ ଟିକକର ସମ୍ଭାବନା ଆଡ଼କୁ ।

ଶୁଣିଲି ତୁ ସଜାଇଦେଇ ଯାଇଚୁ ଘର ମୋର,
ନାନା ସୁନ୍ଦର ନାହିଁର ଫୁଲପକା ବିଛଣା ଚଦର
ସଜାଡ଼ି ରଖି ଦେଇଚୁ ମୋ ଆଲିଙ୍ଗନ ଓ ଆତଙ୍କ
ଖଟ ଦାଢ଼ରେ, ତୋର ଅକଳ୍ପନୀୟ ଶୈଳୀରେ ।

କଥା ନଥିଲା; ତୁ ମୋର ଭାଗ୍ୟ ହୋଇଥିଲେ ।
ତୁ ମୋର ବିଗତ ଅହଙ୍କାରର ଆତତାୟୀ,
ତୋର ଖୋଜ୍ ନେବାକୁ ମତେ ଲାଗିପାରେ
ଅନେକ ଅନେକ ବର୍ଷ ଶୀତ କାକରର ।

( ରେମ୍ବାନବେ )

ଜାଣିଚୁ ଋଷି ମୁନିଙ୍କ ତପସ୍ୟା ସରିଗଲିଣି,
ନିଭିଗଲିଣି ଯଜ୍ଞକୁଣ୍ଡର ନିଆଁ,
କଳା ମାଟି ଆଦରି ନେଲିଣି ତା'ର ନୀରବତା,
ସତର୍କତା ଶିଖିନେଲେଣି ପାବଶ୍ରାପ୍ଯ ସୁଖ

ଏ ଜୀବନର, ଏ ଗୌଣ ପରାଭବର ।
ସବୁଚଳ ଆଲୁଅ ଜଳାଇଦେଇ ଏ ଘରର
ମୋର କିଛୁ ଦେଖିବାର ନାହିଁ, ଶିଖିବାର ନାହିଁ,
ନିଦରେ ବୁଜି ଯାଇଥିବା ଆଖିର ମୁଦ୍ରା ଛଡ଼ା ।

ତୁ ଯେଉଁଠି ଅଛୁ ଥା' ତୋ' ସୁଖରେ,
ମୁଁ ମୋର ଗୁଳିଥାଏ ଏ ଛନ୍ଦର ଛନ୍ଦ ଧରି
ଯେଉଁଥିରୁ ନା କିଛୁ ଖସିଯିବାର ଅଛି
ନା କିଛୁ ମିଶିଯିବାର ଅଛି ତୋ' ସ୍ୱର ପରି

( ତଜ୍ଜାନବେ )

## ଅପେକ୍ଷା

ଏ ଶିରା ଧମନୀର ରକ୍ତ ନର୍ତ୍ତନ
ଗୋଲାପକୁ ଫେରିଯିବ,
ଏ ଅସ୍ଥି ଚମକାଇଦେବ ମାଟିକୁ
ଭବିଷ୍ୟତର ଶୁଭ୍ରତାରେ,
ଏ ମାଂସ ତୋର ପ୍ରତିଶ୍ରୁତିର ଦୂର ଅଗରେ
ଲାଗି ରହିଯିବ ଚିରକାଳ ।

ଜାଣି ସୁଦ୍ଧା ମୁଁ ଗଲି ଏପରି ସହରକୁ
ଯେଉଁଠି ଆକାଶରେ ପତଳା ଜହ୍ନଟିଏ,
ଅକ୍ଷର ଧୋଇଯାଇଥିବା ଚିଠିର ଟୁକୁରାଏ ପରି ।
କେଉଁ ବାଟହୁଡ଼ା ରାତିର ସମ୍ଭାବନାରୁ
କ'ଣ ବା ଆଉ ମିଳେ ?

ତୋର ଶପଥ ଥିଲା ଅସ୍ଥନକ, ଆଚମ୍ବିତ ।
ତୋ' ମୋ' ଭିତରେ
କୌଣସି ପୃଥିବୀର ନୀଳାମ୍ବର ଚତୁରପଣ
ପୁଞ୍ଜି ଠେକ ଠିଆ ହେବ ନାହିଁ ।
ଛୁଇ ହୋଇଯିବା ଛଡ଼ା ତୋର ଅଜ୍ଞାତରେ
ମୋର ବା କ ଗତ୍ୟନ୍ତର ଥିଲା ?

( ପଞ୍ଚାନବେ )

ଏବେ ଯେହେତୁ ହାତରେ ତୋର
ସକଳ ସୂର୍ଯ୍ୟକୁ ତୁ ଧରି ରଖିଚୁ,
ମୁଁ ଚେଷ୍ଟା କରୁଚ ଶିଖିନେବାକୁ
ସମସ୍ତ ପକ୍ଷୀଙ୍କର କଳରବ,
ଅନ୍ତତଃ ଆଜି ଗୋଟାଏ ଦିନ ତ
ମୋର ଅପେକ୍ଷାକୁ ପାର୍ଦ୍ଧ କରିଦେବ ।

କ୍ଷୀଣ ହେବାର ସୌଭାଗ୍ୟ ମୋ' ମୁଣ୍ଡ ଉପରେ
ଛତିଖାସ ପରି ।
ଏତିକ ହିଁ ମୋର ଜ୍ଞାନ ।
ବନ୍ଦ ଏ ଘରର ଅନାବଷ୍କୃତ ଅଭ୍ୟନ୍ତରରେ
ଉଦ୍ଧାମ ଅତୀତଟାଏ ଚେଇଁ ଉଠିବ କ ଅକସ୍ମାତ୍ ! ସେ ଭୟରେ

ପଥ ଗହଳକୁ ମୋର ଯାତ୍ରା ଏଣିକ
ଅବାରିତ, ଅଖଣ୍ଡ । ଅବଶ୍ୟ
ମୋର ସଂପୂର୍ଣ୍ଣତାର ନୌକା ଭସାଇ ନେବାର
କର୍କଶ ସାହସ
ନପାର ଅଛି କ ନାହିଁ ଏଯାଏଁ
କୌଣସି ମୃତ୍ୟୁ କହିପାରି ନାହିଁ ।

ପୁନର୍ବାର ମୁଁ ଅପେକ୍ଷାରେ
କାହାର ନୁହେଁ, କଛିର ନୁହେଁ;
ପବନ ବହିବା କଥା ବହୁଥିବ,
ପତ୍ର ଝଡ଼ୁଥିବ ଗଛରୁ,
ଏକଦା ଆକ୍ରାନ୍ତ ତୋର
ଅବୟବର ଆକାଶରେ ଝଲସୁଥିବ କ୍ଷମା ।

( ଛତ୍ରପୁରନବେ )

## ପରିଧି

କଏ କେତେବେଳେ କାହିଁକି
କାହିଁକି ମତେ ଯେ କହିଥିଲା
ଉଁଚ୍ଚ ଗଛଡ଼ାଳର ମହୁଫେଣାକୁ ଢେଲା ମାରିବାକୁ !
ଖାଲି ଯା' ମତେ ଜଣାଥିଲା
ସେଥିର ମହୁ ମୋର ନିଜର,
ଦୁଇ ଖଳା ମଟିର ଶଗଡ଼ ଦଣ୍ଡା ଯେମିତି ସମସ୍ତଙ୍କର,
କିନ୍ତୁ କେଉଁଠି ଅଟକିଯାଇ ମୁଁ ଭଟେ
ଆଖି ମାରି ଦେଇ ପାରେ,
ତୁ ତା' ସ୍ଵତ୍ଵିକ ସାଇତି ସଂପତ୍ତି
ରଖିଦେବୁ ବୋଲି ତୋ' ଗର୍ଭରେ ।

ଏମିତି ଚମତ୍କାର ଦଂଶନଶୀଳ ଭୁଲ୍‌ଟିଏ
ମୁଁ କରି ବସିଲି !
ଯେଝା ବାଟରେ ଲୋକେ ଗଲେ ସୂର୍ଯ୍ୟ ଆଡ଼କୁ, ସମୁଦ୍ରକୁ,
ବାଡ଼ ବୁଲାଇ ବୁଲାଇ ସମସ୍ତ
ଖସିଗଲା ମୋ' ଦେହର ଗାଁର ସୀମାରେ ।
କ୍ଷତ କ'ଣ କ୍ଷତି କ'ଣ ମୁଁ ବୁଝିଲି ନାହିଁ,
ଚକ୍ରାବର୍ତ୍ତେ ଖାଲି
ଚକ୍ରହୋଇ ଗଡ଼ୁଛି

( ସତାନବେ )

ଧୂଳି ଧୂସର ଖରା ଧୂସର ଦାଣ୍ଡରେ,
ମୋର ବୈରାଗୀ ଦ୍ୱଯୋଗ ଚାହାଁରେ
ଲଙ୍ଗଳା ରୂପ ଧରି ।

ମହୁମାଛିଙ୍କର ନର୍ଦ୍ଦିଷ୍ଟ କିଛି ମତ ନାହିଁ, ଗତି ନାହିଁ, ସ୍ଥିତି ନାହିଁ,
ଏମିତି ପାଗଳ ପରିଧି ଟିଏ ସେମାନେ
ଟଡ଼ିବସିଲେ ଯେଉଁଥିରେ
ମୁଁ ଥିଲେ ତୁ ନାହୁଁ, ତୁ ଥିଲେ ମୁଁ ନାହିଁ,
ଅବାକ୍ ଶୋଭା ତା'ର !

ଆମର ଆଉ ଭେଟ ହେବ ନାହିଁ
କୌଣସି ନିକାଞ୍ଚନ ଖରାବେଳେ,
ସେମାନେ ଫେରି ନଗଲାପାଏଁ
ଗଛଡାଳକୁ, ବେଳ ଅଛି କି
ଫେରିଯିବାକୁ ଛୋର ମୋର
ଅକାଞ୍ଚନ ମହୁମାଛିଙ୍କର ?

( ଅଠାନବେ )

## ସାତଟି କବିତା

(ଏକ)

ବେଶ୍ ଦୂରରେ ଥିଲା ସମୁଦ୍ର
ଯେଉଁଠି କି ମୁଁ ତତେ ନେବାକୁ ଚାହୁଁଥିଲି,
ଠିକ୍ ଯେମିତି ମତେ କିଏ ନେଇ ଯାଇଥିଲା
ତୋର ଅବୁଝା ପଣର କଞ୍ଚା ଆଖି ଆଗକୁ ।

ସମୁଦ୍ର କ'ଣ ଦେଖିଥିବ ? ସୂର୍ଯ୍ୟ ବୁଡ଼ିବା
ନହେଲେ ଆମ ବାହୁବନ୍ଧନୀ ଶୁଖି ଆସିବା ଅଚ୍ରଭୁରେ ।
ଆଜି ସୁଦ୍ଧା ମୁଁ ପ୍ରାୟ ଚପି ଆସିଲିଣି
ସବୁ ଅଭାବ ଓ ଆଘାତର ଅପ୍ରସ୍ତୁତ ମୁହଁ ।

ତୁ ଯେଉଁ ସୁଖ ଏଯାଏଁ ଜାଣିନାହୁଁ
ତା' ଦାବୀ କରିବାର ଅନିବାର୍ଯ୍ୟତା
ମୁଁ କେଉଁଠୁ ଶିଖିଲି ? ନଆଁ ପାଣିରୁ, ଆକାଶରୁ
ନା କୋଇଲି ଡାକୁଥିବା ଆମ୍ବଡ଼ାଳରୁ, ବିଜୁଳିରୁ ?

ଦିନେ ନା ଦିନେ ମୁଁ ତତେ ନେଇଯିବି
ଶୈଳ ଆଉ ପାଖରେ ଲୁଚିଥିବା ଉପତ୍ୟକାକୁ;

(ଅନେଶତ)

କାଳେ ତୋର ପଥର ଓଠ ଟିକେ ଚଞ୍ଚଳ ହୋଇଉଠିବ
ଉପ୍ସରେ ବା ମଯୂର ଦେଖିବାର ସମ୍ଭାବନାରେ ।

ମଯୂର ବି ସମୁଦ୍ର ପରି, ଖାଲି ଯାହା
ଭିନ୍ନ ଭିନ୍ନ ଭଙ୍ଗୀରେ ଦେଖିବାର, ବୁଝିବାର ସ୍ୱାଦ;
ନୀଳ ଝଲମଲ ରଙ୍ଗରେ ପଦ ମୁଁ ବୁଡ଼ିଯାଏ,
ମୋର ବଦାନ୍ୟ କ'ଣ ନାଚି ନାଚି ଆଗେଇଯିବ ତୋ' କୋଳକୁ ?

(ଦୁଇ)

ପୂର୍ବ ଗୋଟାଏ ଦିନ ମୁଁ ଦେଇଦେଲି ତୋ' ହାତରେ;
କ'ଣ କଲୁ ତୁ ? ଅପେକ୍ଷା, ଅପେକ୍ଷା, ଅପେକ୍ଷାରେ କଟିଗଲା ?
କାହାର ? ତୁ କହୁଚୁ ତୁ ଜାଣୁନା ।
ତୁ କିନ୍ତୁ ଫେରାଇ ଦେଲୁ ଆଜ ଗୋଟିଏ ଦିନ,
ମୋ' ହାତ ବଢ଼ାଇ ହୋଇ ରହିବି ପାଇବା ପାଇଁ ।

ଅଜ୍ଞାନରେ ଏମିତି ସୃଷ୍ଟି ହୁଏ ଚଢ଼େଇର, ମଞ୍ଜିର;
ଏପରିକି ଜୋଡ଼ା ହୁଏନା ଥରେ ବୁକୁ ଗୁହାଁଦେବା ପାଇଁ ।
ତୁ ତୋର ସାଙ୍ଗ ସାଥିରେ ସୁଖ ଦୁଃଖ ହେଉ,
ମୁଁ ଆଗେଇଯାଏ ମିଳନସୁମର ଐଶ୍ୱର୍ଯ୍ୟ ଆଡ଼କୁ ।
କେତେ କପମର ଫୁଲ ଘେରିଯାନ୍ତି ଗୀତ ଗୁହର ପାଖରେ ।

ଏବେ ମୋର ଆକାଂକ୍ଷା—ଶେଷ ଗୀତଟି ଗାଇଦିଅନ୍ତୁ,
ଶେଷ ଫୁଲଟିକି ଛୁଇଁ ଦିଅନ୍ତୁ ବନ୍ଧୋରଚାରେ ।
ନା, ନା, କହୁଚି ରକ୍ତ, ନୀଳ ଜୋହ୍ନିତ ଦିଗନ୍ତ, ସୂର୍ଯ୍ୟ ।
ବହୁ ଶତାବ୍ଦୀ ଧରି ମୁଁ ଚହ୍ନିଚି ଜାଣିଚି,
ସେମାନେ ଉଚ୍ଛୁଳାଇ ଦେବେ ମୋ' ହାତମୁଠା
ଅନ୍ତତଃ ତୋର ହୃତରେ ।

( ଶବ୍ଦ )

(ତିନି)

ଦର୍ପଣ ଆଗରେ ତୋର ଠିଆ ହେବାର ଭଙ୍ଗୀ—
ସତେ ଯେମିତି ଦର୍ପଣ ତଳେ ଚାହିଁ ରହିଛି, ରହିଥିବ
ଚିରକାଳ । ମୁଁ ଜନ୍ମ ହେଉଥିବି, ବାପା ହେଉଥିବି, ମରୁଥିବି ।
ତୁ ଫେରି ଚାହିଁବୁ ନାହିଁ ଘାସ ଭିତରେ ପଡ଼ିଥିବା କଚ୍‌କୁ ।

ବାଲବନ୍ତ ଶିଖରେ ଠିଆ ହୋଇ ତୁ ମୁଣ୍ଡ କୁଣ୍ଡାଉଥିବୁ,
ଫୁଲଗୁନ୍ଥି ଦେଉଥିବୁ ବେଣୀରେ ଝଞ୍ଜା ପବନରେ;
ଏତକ ପରାକ୍ରମ ତୋର ସହ୍ୟ କରିନେବ ପୃଥିବୀ
କାରଣ ସେ ପୃଥିବୀ ତୁ ନିଜେ । ମୁଁ ଅପଦାର୍ଥ ଦର୍ପଣ ।

ମୁଁ ନିଜକୁ କେବେ ଦେଖି ପାରିବି ନାହିଁ, ଯଦି ତୋର
ବାହୁ ବେଡ଼ାରେ ମୁଁ ସୀମିତ ନ ହୋଇଛି, ଜ୍ୟାମିତି ନ ହୋଇଛି,
ଜନ୍ମ ନ ହୋଇଛି, ନ ଶିଖିଛି ଅଭାବ ଓ ମୃତ୍ୟୁର ସ୍ଥିରତା,
ମୋର ଭାଷା କେବଳ ନିର୍ନିମେଷ ଆଖିରେ ଚାହିଁ ରହିବାର ।

ଆ’ ଯେତେବେଳେ ଅନ୍ଧାର ଘେରି ରହିଛି ଚତୁର୍ଦ୍ଦିଗ,
ଗମ୍ଭୀର ଚଣ୍ଡ୍ର ଭିତରକୁ ଖସିପିବା ପଦ୍ମନାଡ଼ରେ ଛନ୍ଦଛନ୍ଦ ହୋଇ,
ଆମେ ପରସ୍ପରକୁ ଦେଖି ପାରିବା ନାହିଁ, ଛୁଇଁ ନେବା
ସେଇ ଟିକିକ ଆଲୁଅ ଯାହା କେବେ ଆଲୁଅର ନୁହେଁ କି ନଥିଲ୍ ।

(ଚାରି)

ଅନେକ ଥର ଶୁଣିଛି ତୁ କହିବାର ଫୁଲକୁ
‘ମଉଳି ଯା’ନା’, ଚଠିକୁ, ‘ହଜିଯିବୁନ ବାଟରେ’,
ଅନେକ ଥର ଦେଖିଛି ତାର ଭଲ ଲମ୍ବାଇ ଦେଇଛୁ
ମୁହୂର୍ତ୍ତକୁ, ହାଲ୍‌କା ଶବ୍ଦଙ୍କର ଝୁଲିହେବା ପାଇଁ ।

( ଶହେଏକ )

ଆଜି ପବନ ବହୁଛି ଖୁବ୍, ବର୍ଷା ହୋଇଛି ।
କାହାରି ଲୋଡ଼ା ନଥିବା ସୁଖ ମୁଁ ବାଣ୍ଟି ଚାଲିଛି,
ଦେଇ ଚାଲିଛି ଅବିରତ, ଦେଇ ସାରିବା ପରେ
ବାକି ଯାହା ରହୁଛି ତା' କେବଳ ପାଣିର ଓଜନ ।

ଫୁଲମାନେ ସତେଜ ଅଛନ୍ତି ତୋର ବଗିଚାରେ,
ଶିଠି ଡାକ ଆଣିଚି ତା'ର ଉତ୍ତରକୁ । ଅଥଚ
ପବନର ଝଡ଼ାଇ ନେବାର ଅଧିକାରରେ କଳଙ୍କି ଲାଗିନାହିଁ,
ବର୍ଷା ହଜିଯାଇନି ବାଟରେ ।

ମୋ ଉତ୍ତରର ଉତ୍ତର
ଆସିବାର ଆଶା ମୁଁ ରଖିନାହିଁ କାରଣ
ପବନ ସୃଷ୍ଟି କରେ ଖାଲି ଯାଗା, ପବନ ହିଁ ଭର୍ତ୍ତି କରେ ।
ତା'ର ଭଣ୍ଡାରଘର କେଉଁଠି ମତେ ଜଣାନାହିଁ ।
ତୋର ସେବା ହସରେ ଅବା ଯଦି ମୁଁ ତା'ର ଠିକଣା ପାଇଯାଏ ।

( ପାଞ୍ଚ )

ତୁ ଆସି ପହଞ୍ଚିଲାବେଳକୁ କେମିତି ମତେ ଦେଖିବୁ ?
କି ରୂପରେ ? ଆକାଶହୀନ ତାରା ନା ସମୁଦ୍ର ତରଳ ତମ ଉପରେ
ଡେଇଁ ଡେଇଁ ଛୁଇଁ ଛୁଇଁ ଦୌଡ଼ିଥିବା ଖପରାକୁ ?
ମୁଁ ଜାଣେ କେଉଁଟା ଦେଲେ ତତେ ଭଲଲାଗିବ ନାହିଁ,
ତୁ ଭଲପାଉ କୋଇଲିର ଦୁଇ କୁହୁ ଡାକ ମଝିର ନୀରବତାକୁ ।

ମୁଁ ଭଲପାଇଛି ଅନେକ କଥା—ନୂଆ ବନ୍ଧୁ, ସମୁଦ୍ର କୂଳର
ଭଙ୍ଗା ଘରଦ୍ୱାର, ସ୍କୁଲ ପଛରେ ଲୁଚି ଆମ୍ବୁଲ ଚାଖୁଥିବା ଭଉଣୀକୁ,

( ଛେଦୁଇ )

ଯାଣ୍ଟସେଲିଆ ଟର୍ଚ୍ଚ ଆଲୁଅ ଆଗରେ ଅପଦସ୍ଥ ଠେକୁଆ,
ମୋ ହାତମୁଠାରେ ଲାଜରେ ଜଡ଼ସଡ଼ ତୋର ଆଙ୍ଗୁଠି,
ଆଜି ମୋର କ୍ରମାଗତ ବଢ଼ିଚାଲିଥିବା ନପାରିଲା ପଣ ।

କାଲି ସଞ୍ଜରେ ସେ ଫେରିଲା ପ୍ରବାସରୁ, ହୁଏତ ଜେଲ୍‌ରୁ,
ହୁଏତ ଅନ୍ୟ କୌଣସି ଗ୍ରହରୁ, ପାଦ ପକାଇ ପକାଇ
ଚୁପ୍ ଚୁପ୍ କାକରଭିଜା ଘାସରେ, ଅବୋଲକରା ମଣିଷଟେ ।
କି ଅବା ତା'ର ଆକର୍ଷଣ ? ତେବେ ଦେଖ୍, ଦେଖ୍ ତା' ଅନିବାର୍ଯ୍ୟତା
ଠିଆହୋଇଛି, ହସିଲା ପରି ହସୁଛି, ତୋ' ମୋ' ମଝିରେ ।

(ଛଅ)

ମୋ ଚିଠି କେଡ଼େ ନିଃସଙ୍ଗ, କେଡ଼େ ନିରପରାଧ,
ନହେଲେ କି'ଣ ପଡ଼ିଲା ମାହେ
ଫାଙ୍କା ଡାକ ବାକ୍ସର ତଳେ ଯାଇ ପିଟିହୁଅନ୍ତା ଜୋର୍‌ରେ ?
ମୁଁ ଲେଖିଥିବା ଶବ୍ଦଗୁଡ଼ିକ କେବେ ଥରେ ଅଜ୍ଞାତରେ
ତୋ ଦେହର ସୁଗନ୍ଧ ଫଳ ଚାଖିଥିଲେ ।
ଏବେ ସେଗୁଡ଼ିକର ଅର୍ଥ ନାହିଁ, ଅର୍ଥ ନଥାଇ
କେଉଁ ଭାଷା ବା କେତେବେଳେ ଭୁଲ୍ କରିପାରେ ?

ସାରା ଜୀବନ କଟାଇଦେଲି ଚିଠି ଲେଖି ଲେଖି ।
ସବୁ କୁଆଡ଼େ ପହଞ୍ଚିଲେ ଯାଇ ଅନେକ ଡେରିରେ ।
କବରରୁ ସୁନ୍ଦର ଶବ ଉଠି ପୁଣି ଯାଇ ଶୋଇଗଲା ପରେ ।
ଚତୁର୍ଦ୍ଦିଗ ଅନ୍ଧାର ଘୋଟିଗଲା, ଦୟା କ୍ଷମାର ଜାହାଜ
ହଜିଗଲା ଝଡ଼ସଙ୍କୁଳ ହତଚକିତ ବିପର୍ଯ୍ୟସ୍ତ ସମୁଦ୍ରରେ ।
ଏବେ ବି ମୋ ପାଖରେ ଭାଷା ଅଛି, ନିର୍ମମ କଠୋର
ଅଗ୍ନିନଳ ଝଞ୍ଜା ପବନ ପରି ତତେ ନିର୍ବାକ୍ କରିଦେବାକୁ ।

( ଶବ୍ଦେତନ )

ଅନ୍ୟ ହାତର ଗୋଟାଏ ଗଛ ବୁ ଲେଟିଗଲୁଥିବୁ
ଗୌରିକବର୍ଣ୍ଣ ଚେଷ୍ଟା ଗଣ, ବୁକରେ ଅନାଇଁଥିବ ଅନ୍ୟଭାଷା
ତୋର ଉଷ୍ଣତା ନାନା ମୁହୂର୍ତ୍ତରେ ରଙ୍ଗ ବୋଳିଦେବାକୁ ।
ବ୍ୟସ୍ତ ହୋଇଯିବୁନ ଏ ଶଠି ଯାଇ ଉତ୍ସବରେ ।
ତା' କଠୋର ଆଲୋକରେ ତୋ ଆଖି ଝଲମିଯାଇଥାରେ ।
ତେବେ ସେ ଯାଇ ଉତ୍ସବ ମୋ ପାଖକୁ ଫେରିଆସିବା ପାଇଁ
କ୍ଷୀଣ ହୋଇ ଅସ୍ତ ଯିବା ପରେ, ସଜଳ ମେଘଗଣ ।

( ସାତ )

ଆଜ ବା ଆଉ କ'ଣ ଲେଖିବ ?
ଉଧାର ଆଣିଥିବା ସ୍ବପ୍ନ ତ ଫେରାଇବାକୁ ବସିଲଣି
ଫୁଲକୁ, ପ୍ରଜାପତିକୁ, ସୂର୍ଯ୍ୟକୁ ।
ଅନ୍ଧ ସମୟ ଯେ କ'ଣ ଦେଖାଇଥିବ ମନେ ନାହିଁ,
କ'ଣ ବା ସେ ଦେଖାଇବ ଥରେ ମୁଁ ନିଃସ୍ବ ହୋଇଗଲେ,
ଉଲଗ୍ନ ହୋଇ ଠିଆ ହୋଇଗଲେ ନିର୍ଜନ ପାର୍କରେ
ଚତୁର୍ଦ୍ଦଶୀର ଭାବରଞ୍ଜିତ ଜହ୍ନ ଆଲୁଅରେ !

ଏ ମନ କିଛି ବୁଝେ ନାହିଁ ।
ଦର୍ପଣରେ ଉର୍ଦ୍ଧ୍ବ ହୋଇ ପୋଷାକ ପର
ସକାଳୁ ସକାଳୁ ଠିଆ ହୋଇଯିବାର ଦୃପ୍ତ ଭଙ୍ଗୀ ବି
ତା'ର ଶେଷ ଉତ୍ତାପ, ଆରମ୍ଭ ଅପରିଚିତ ପାର୍ଶ୍ବଚରଙ୍କ,
ମଝିରେ ନା ଦୟା ଅଛି, ମାୟା ଅଛି,
ଅଛି ନିର୍ଲିପ୍ତତାର ଘୋଡ଼ା ସ୍ବଭାବରେ ବି ଆତଯାତ ତା'ର !

ତୋର ଚେଷ୍ଟାରେ ପଶୁପକ୍ଷୀଙ୍କ କଳରୋଳ ଥିଲା;
ବାହୁବଳ ମୂର୍ତ୍ତି ଲଢ଼ିଥିଲା ପଦ୍ମାରେ;

( ଶତେସ୍ବର )

କାହାଣୀ ଲମ୍ବି ଚାଲୁଥିଲା ଘାସ, ହରଣ, ମୟୂର ଓ ମେଘ ନେଇଁ ।
ଖାଲି ଏତକ ରହିଲା—ଆଖି ତଳେ କଳା ଦାଗ,
ଭୁଲ୍ ଗାଡ଼ିରେ ଚଢ଼ିଯାଇଥିବାର ସଂଶୟ ଓ
ଅବର୍ଣ୍ୟ ବିଫଳତାର ଭୟ ।

ଆଉ ଯାହା କହିବ ଭୁଲ୍ କହିବ କି ଠିକ୍ କହିବ
କ'ଣ ଯାଏ ଆସେ ସେଥିରେ ? ଆମେ ଭାସୁଚେ
ମୁହାଁଣରେ, ମିଠା ପାଣିରେ ନା ଲୁଣି ପାଣିରେ ?
ଆଖି ଝଲସିଯାଉଚି ଏମିତି ଅମର୍ତ୍ତ୍ୟ ଆଲୁଅରେ ଯେ
ବଂଶୀତାନ କି ଉଦ୍ୟାନ ବୋମା ବିସ୍ଫୋରଣର ଶବ୍ଦ ପାଇଁ
କାନ ନାହିଁ ଆମର, ବାହୁ ନାହିଁ ପରସ୍ପର ଛନ୍ଦି ହୋଇଯିବାକୁ ।

( ଶହେପାଞ୍ଚ )

# ସୁଲୋଚନାର ବାପା

ଗ୍ରୀଷ୍ମ ଛୁଟି ପରକ ଉପରେ ଆସି ଶୁଣିଲି ଯେ
ସୁଲୋଚନାର ବାପା ମରିଯାଇଛି । ଚରିଯାଇଛି କନ୍ଦଳ ସୁଲୋଚନାର ପା' ।
ମଦ ଖାଇ ଖାଇ ନଷ୍ଟ ହୋଇଚଲା ଲୋକଟା, ସତେ ଯେମିତି
ନଷ୍ଟ ନ ହୋଇଯିବାର ଅନେକ ବାଟ ଲମ୍ବି ରହିଛି ହାତ ପରି
ଆମ ଆଖି ଆଗରେ, ଗୋଟାକୁ ଧରି ବୁଲିଗଲେ ହିଁ ନସ୍ତାର ।

ମୁଁ ତାଙ୍କୁ କେବେ ଦେଖି ନାହିଁ ସେ ବଞ୍ଚିଥିଲାବେଳେ ।
ଏବେ ତାଙ୍କୁ ଦେଖିହେବ ଫେରିବା ସାଗଉନ ମୂଳ ଲାଗି,
ମାତାଲ୍ ହୋଇ ମୁଣ୍ଡ ଝୁଙ୍କାଇ ବସିବା ଗାଁ ମୁଣ୍ଡ ବରଗଛ ମୂଳେ,
ଭଲୁଆଙ୍କୁ ଶୋଧିବା, ତାସଙ୍କୁ, ପିମ୍ପୁଡ଼ିଙ୍କୁ, ଝଡ଼ୁଥିବା ଫଳଙ୍କୁ,
ସମସ୍ତଙ୍କୁ କହିବା ଯା' ଯା' ସେଠି ଅନାଇ ବସିଥା, ବେଳ ହେଲେ ଡାକିବୁ ।

କାଲି ବଡ ଭୋରୁ ହୁଏତ ଆସି ପଚାରିବ ବାବୁ, କିଛି କାମ ଅଛି କି ?
ମୋର ହଁ ବା ନାହିଁ ତାଙ୍କୁ ଶୁଭିବ ନାହିଁ, କାନ ନଥିବ ତା'ର,
ନାକ ନଥିବ; ମାଟିର, ନାନା ଫୁଲ ଉପର ବାସ୍ନା ଚହଟିଯିବ ଯେଉଁଠି
ସେ ଠିଆ ହୁଅନ୍ତା ଆସି । ମୁଁ ଦେଖିବି କେବଳ ଟିକେ ଖାଲି ଯାଗା
ଯେଉଁଠି ମୁଁ ଲଗାଇ ପାରନ୍ତି ଗଛଟିଏ ସୁଲୋଚନାର ବାପା ହୋଇଥିଲେ ।

( ଷଢେଇଅ )

ଲୋକେ ଯାହା କହନ୍ତୁ, ସେମାନଙ୍କ ଅକ୍ତିଆରରୁ ମୁଠାଏ ମାଟି
ଖସି ଚାଲିଗଲା, ଚର୍ଚ୍ଚିତ ହୋଇଗଲା, ପାଇଗଲା ଅଖଣ୍ଡ ନାଁଟିଏ ।
ଆମେ ଯାହା ଭର୍ତ୍ତି ଦେଉ—କଣ୍ଢେଇ, ଘର, ବୋତଲ, ସ୍ନେହ ସମ୍ପର୍କ—
ଧରୁ କଲ୍ଲୁ ବସିଥିବେ ସେନେ ନିଜ ନିଜ ଯାଗାରେ, ସ୍ପଷ୍ଟ, ପ୍ରକାଶ୍ୟ
ସୁଲୋଚନାର ବାପାର ଶବ ସ୍ତୂର ପାଖରେ, ଆଲୁଅରେ, ବରଗଛ ମୂଳେ ।

( ଶହେସାତ )

# ଆଲୁଅ

ପାନ ଦୋକାନର ଆଲୁଅ ଥରେ ଜଳି ସରିଛି,
ତା' ଆଉ ଲିଭିବ ନାହିଁ ।
ଦୋକାନୀ ତା'ର ଦୋକାନ ବନ୍ଦ୍ କରି ଚାଲିଯିବ ଘରକୁ ।
ସେ ଆଉ ଫେରିବ ନାହିଁ ଲିଭାଇବାକୁ;
ମନେ ପଡ଼ିଲା ବେଳକୁ ସେ ଖୋଷଣୀ ଫିଟାଉଥିବ ସ୍ତ୍ରୀ ଅଣ୍ଟାର ।

ପବନ ଦୂରତର ବାଲିପନ୍ତାରେ ବ୍ୟସ୍ତ ଥିବ
ପଚିସଢ଼ା ଶବର ଗନ୍ଧ ଚହଟାଇବାରେ ଚତୁର୍ଦ୍ଦିଗରେ ।
ଅଥବା ରେଳଯାତ୍ରୀର ଆଖିରେ ପଡ଼ିବ ବଣ ଫାଙ୍କରେ
ମିଞ୍ଜି ମିଞ୍ଜି ଆଲୁଅ ଟିକେ କ୍ଷଣକ ପାଇଁ ।
ତା' ଆଉ କେବେ ଲିଭିବ ନାହିଁ, ନାହିଁ ।

ଅନେକ ଗାଡ଼ି ଚାଲିଯିବ ଦିନ ପରି ।
ଥରେ କହିଥିବା ଶବ୍ଦଗୁଡ଼ିକ ଆମର,
ଥରେ ମାଗିଥିବା ବିସ୍କୁଟ୍ ଓ ସିଗାରେଟ୍
ଚୁପ୍‌ଚାପ୍ ଖସିଯିବେ ଆମ ଲୋଭର ଜାଲ ପାଶରୁ ।
ଭିନ୍ନ ଚକ୍ଷୁରେ ଗର୍ଭ ଦେବ ଭବିଷ୍ୟତର ।

( ୧୯୭୦ )

ଯେତେ ଅତିଥି ଆସିବେ ଆଜ ଆସନ୍ତୁ,
ସେଇଁଠି ବସିବେ ବସନ୍ତୁ, ଯାହା କହିବେ କହନ୍ତୁ,
ଫୁଲ ଛିଣ୍ଡାନ୍ତୁ, ମାଟି ଓଲଟାଇ ଦଅନ୍ତୁ, କିନ୍ତୁ
ବାଧ ସେମାନେ ଗୁଡ଼ପିବା ପାଇଁ ଟିକଏ ଖାଲି ଯାଗା
ଆଲୁଅ ଟିକକ ଜଳବା ପାଇଁ, ଜଳ ରହିବା ପାଇଁ ।

ନଈ କୂଳରେ ବରଗଛ ମୂଳର ପଥର ଦନ୍ଧରେ
ସବରେ ସବ ଘୋଡ଼ାଇ ମୁଁ ଲୁଚାଇ ରଖିଚି ଆଲୁଅ,
ଯାହାକ ମୋର ନୂଆ ଜନ୍ମ ହୋଇଥିବା ଭାଇର ମୁହଁ
ଦେଖିବାକୁ ମୋ' ବାପା ଦେଇଥିଲେ ମୋ' ହାତକୁ,
ପୁଣି ମୋ' ହାତରୁ ନେଇ ସେ ଚାଲିଗଲେ ଯେ ଆଉ ଫେରିଲେ ନାହିଁ ।

( ଶହନଅ )

## ହଁ, ବଂଶି !

ହଁ, ବଂଶି ! ଆକସ୍ମିକ ଭାବରେ ଏଠି ସେଠି କେଉଁଠି,
ବସ୍‌ଷ୍ଟାଣ୍ଡ୍ କି ଆମ୍ରତୋଟା, କୋଣାର୍କ କି ବାଘର ଆଁରେ
ଦେଖା ହୋଇଯାନ୍ତା କି ଆମର, କେଡ଼େ ମଜା ହୁଅନ୍ତା !
କେଡ଼େ ଭଲ ଲାଗନ୍ତା ଦେଖା ହୋଇଗଲେ ଏଠି ସେଠି କେଉଁଠି !

ମାସ ମାସ ବର୍ଷ ବର୍ଷ ଆମକୁ ଲାଗିଗଲା ପ୍ରସ୍ତୁତ ହେବାରେ,
ଆକସ୍ମିକତାର ବେକ ମୋଡ଼ିବାରେ, ଲୁଗା ଚିରି ରକ୍ତ ଛୁଆଁ
ବାଟରେ ଫିଙ୍ଗି ଦେବାରେ, କି କଷ୍ଟ ଅଥଚ କେଡ଼େ ସହଜ ନା ?
ମଲାଣି କି ଗଲାଣି କିଏ ଯେଝା ଯେଝା ବାଟରେ ଚାଲିଯିବାରେ !

କେଉଁଠି ଅଛ ତମେ ଏତେ ଜନ ଜନା ଦେଖାରେ, ମୁଁ କେଉଁଠି ?
ଏଯାଏଁ ସ୍ୱପ୍ନ ଦେଖୁଛ ଶରବିଦ୍ଧ କ୍ରୌଞ୍ଚ ପକ୍ଷୀର ଆକସ୍ମିକ
ଖସି ପଡ଼ିବାର ତମ ଆଖି ଆଗରେ ? ମୁଁ ବି ଦେଖୁଛି, ବଂଶି !
ଏ ମାଟିର କିନ୍ତୁ ଆଜି ଚମତ୍କୃତ ହେବାର ଅଭ୍ୟାସ ନାହିଁ, ବେଳ ନାହିଁ ।

କାଲି ସନ୍ଧ୍ୟାରେ ଦେଖିଲି କଷି ମନ୍ଦାର ଡାଳରେ ପଲ୍ଲବ କଢ଼ ଧରିଲାଣି,
ଆଶ୍ଚର୍ଯ୍ୟ ଶବ୍ଦଟିଏ ଯେମିତି ଅବୁଝା ବାହାରି ଆସିଲା ଶିଶୁ ତୁଣ୍ଡରୁ ।
ଏ ମାଟିର ସତ୍ୟ ବଂଶି ! ଯୁଆଡ଼େ ଇଚ୍ଛା ଯାଉଥାଉ, ଦର୍ପୀ, ଉଦାସୀନ ।
ମୋର ତମ କଥା ମନେପଡ଼ୁଛି ଏବେ, ତମର ମୁଁ, ପକ୍ଷୀ ପଡ଼ିଶ

ଆଖି ଆଗରେ । ମୋର କ'ଣ ଭୁଲ୍ ହେବ ଯଦି ମୁଁ ଆଶା କରେ
ଛା ଦେହରୁ ଶରଟି କାଢ଼ିବାକୁ ମୋ ହାତ ନଇଁ ଯାଉଥିବାବେଳେ
ତମ ହାତ ବି ନଇଁ ଆସନ୍ତା ? କେଡ଼େ ମଜା ହୁଅନ୍ତା, ବଂଶୀ, ଯଦି
ଆକସ୍ମିକ ଦେଖା ହୋଇଗଲେ, ରକ୍ତଛିଟା ମିଛ ବୋଲି ଜାଣିଗଲେ !

( ଶତ୍ୱଦଶ )

## ଗୋପାଳପୁର

ସମୁଦ୍ର କୂଳେ ଏସବୁ ଘଟିପାରେ—
ପ୍ରଫୁଲ୍ଲ ଓ ମୁଁ ଗଳାଫଟାଇ ଗାଇପାରୁ
ପୁରୁଣା ସିନେମା ଗୀତ, ପ୍ରେମ ସୁଧାନିଧିର ଯୌବନୋଦଗମ ବର୍ଣ୍ଣନା ।
ଅଧରାତ୍ରର ଦେଢ଼ଘଣ୍ଟାର ବସ୍ତ୍ରହୀନ ଯୋଡ଼େ ଦେହକୁ
ବାରମ୍ବାର ସଙ୍ଘୋଳପାରେ ପବନ ।
ତାରା ନକ୍ଷତ୍ର ଓହ୍ଲାଇଆସି ନାଚିପାରନ୍ତି ଆମ ପାପୁଲିରେ ।

ସମୁଦ୍ର ହାତରେ ଆମେ ଗୁଞ୍ଜିଦେଇପାରୁ ସମସ୍ତ ପରାଜୟ
ମୁକ୍ତ କରିଦେବାକୁ । ଆଗର ସର୍କିଟ୍ ହାଉସ୍‌ରେ
ଯେ କେହି ଶୋଇପାରନ୍ତି ଆରାମ୍‌ରେ ସ୍ତ୍ରୀ ବା ଫାଇଲ୍‌କୁ କୋଳରେ ଯାକି ।
ଲାଇଟ୍ ହାଉସ୍‌ର ବିଶାଳ ଆଲୁଅ ଠାବ କରିପାରେ ଶତ୍ରୁ ଜାହାଜକୁ ।

ଆମେ କାମାକ୍ଷାନଗରକୁ ଆଣି ଠିଆ କରିଦେଇପାରୁ ବାଲିରେ;
ଆମେ ହିଂସା କରିପାରୁ ଫ୍ରେଞ୍ଚ୍‌କଟ୍ ଦାଢ଼ି ରଖା ଟୋକାକୁ,
ବିମାନଘାଟୀରୁ ଯିଏ ଉଠାଇ ନେଇଥିଲା ଅପ୍‌ସରାକୁ ବୁଲେଟ୍‌ରେ;
ଆମେ ଭୁଲିଯାଇପାରୁ ଅପସୃତ ଲେଭର କୁଣଳୀ ହାତକୁ;
ଭବିଷ୍ୟତର ତୃଷ୍ଣାଲୋଲୁପ ଆଖିକି ଆମେ ଜବରଦସ୍ତ ବୁଜି ଦେଇପାରୁ ।

ଆମେ ସରୋଜର ଗାଡ଼ିକୁ ଅପେକ୍ଷା କରିପାରୁ,
ସମୁଦ୍ରକୁ ଉଠାଇନେଇ କଚଡ଼ି ଦେଇପାରୁ ପାହାଡ଼ ଉପରେ;

( ଶହେ ଏଗାର )

ଉଚ୍ଛନ୍ନ କରିଦେଇପାରୁ ସମସ୍ତ ମତ୍ସ୍ୟକନ୍ୟାଙ୍କୁ ।
ଆମେ ପାଗଳ ହୋଇଯାଇପାରୁ, ନିଶ୍ଚଳ ହୋଇ ଯାଇପାରୁ,
ଏକାଦିକ୍ରମେ କାନ୍ଦିପାରୁ, ହସିପାରୁ, ଚିତ୍କାର କରିପାରୁ ।

ଆମେ ବାଲିରେ ବାଲିରେ ଅନେକ ଦୂର ଚାଲିଯାଇପାରୁ,
ଝାଉଁବଣର ଦ୍ୱାରରେ ସ୍ଥପ୍ନାମୂର୍ତ୍ତିଟିଏ ଠିଆହୋଇ ଥାଇପାରେ,
ଆମେ ତା'ଙ୍କୁ କ'ଣ କହିବୁ ନିଶ୍ଚିନ୍ତରେ ଭୁଲିଯାଇପାରୁ ।

## ଗୁଡ଼୍‌ବାଇ

ଗଲାବର୍ଷ ଏ ସହରରେ ଆମେ ଅଟକାଇ ଦେଇଥିଲୁ
ଏଗାରଟା ଟ୍ରେନ୍, ଫିସ୍‌ପ୍ଲେଟ୍ କାଢ଼ି ନେଇଥିଲୁ,
ରେଳଧାରଣା ଉପରେ ବସି ରହିଥିଲୁ ଶୋକରେ, ରାଗରେ,
କୋଇଲା ଗଦା ସେପାଖେ ଅରଖ ବଣରେ
ସଦ୍ୟ ଜନ୍ମିତ ଭିକାରୁଣୀର ଶିଶୁ ବି ଆମକୁ ଅଟକାଇ ପାରୁନଥିଲା ।

ତିନିଶ ପଁଷଠି ଦିନ ଭିତରେ ତିନିଶ ପଁଷଠି ଭାଷା ଓ ପ୍ରତିଶ୍ରୁତି
ଆମକୁ ଶୁଣିବାକୁ ମିଳିଲା, ଖର୍ଚ୍ଚ କରିବାକୁ ମିଳିଲା
ବହୁତ ରକମର ଶବ୍ଦ, ବାକ୍ୟ ଦୋକାନ ବଜାରରେ,
କୁକୁଡ଼ାର ଚୂଳ ପରି ଲାଲ୍ ସନ୍ତୋଷର ଟାହିଆ ପିନ୍ଧି
ଆମେ ନାଚିଲୁ ସାରାରାତି, ବାଲୁଆ ଭୂକମ୍ପ ଯେତେବେଳେ ।

ଆମେ ଫେରିଲୁ ବାପାମାନଙ୍କ ପାଖକୁ, ଦେବତାଙ୍କ ପାଖକୁ,
ଆକ୍ରୋଶରେ ନୁହେଁ, କିଛି ନା କିଛି ଶିଖି ନ ପାରିଥିବା ଆଶଙ୍କାରେ,
ଆମେ ସେମାନଙ୍କୁ ପଚାରିଲୁ କ'ଣ କିଛି ଛାଡ଼ିଗଲୁ କି ?
ସମସ୍ତେ ଚୁପ୍ ରହିଲେ, କଣ୍ଢେଇ ବାଘ ପରି ମୁଣ୍ଡ ହଲାଇଲେ ।
ଆମର ଆଉ ଅନ୍ୟ ସହରକୁ ଯିବାର ସୁ' ନଥିଲା, ଗଲୁନାହିଁ ।

ପୁଣି ଏ ବର୍ଷ ଆମେ ଅଟକାଇ ଦେଲୁ ଏଗାରଟା ଟ୍ରେନ୍,
ପ୍ରତ୍ୟେକରେ ଗୋଟାଏ ଶବ ହିଁ ଏକମାତ୍ର ଯାତ୍ରୀ ଓଦା ସରସର,

( ଶେଷ ତେର )

ଅସ୍ଥିର, ଉଦ୍‌ବିଗ୍ନ, ଆମ ହାତ ଧରି କହିଲେ ବାଟ ଛାଡ଼ିଦିଅ,
ଆହୁରି ଅନେକେ ଆମ ସାଙ୍ଗେ ଯିବେ ପର ପର ଷ୍ଟେସନ୍‌ରୁ ।
ଆମେ କେବଳ ଏତିକି ପଚାରିଲୁ ଆମେ ଆସିପାରୁ କି ?

ଗୋଟାଏ ଶବ କହିଲା ଅବାନ୍ତର ତମର ପ୍ରଶ୍ନ ।
ଆଜି ଗୋଟାଏ କାନ ପାଖରେ ଆସି କହିଲା, ଅପେକ୍ଷା କର ।
ତୃଷ୍ଣାର୍ତ୍ତ ଶବ କହିଲା କୁଆଡ଼େ ଯାଉଛି ମୋ' ଟ୍ରେନ୍ ଜାଣିଛ କି ?
ଆମେ ହୁଏତ ଜାଣିଥିଲୁ ଉତ୍ତରଟା, ପାଟିକି ଆସିଲା ନାହିଁ;
ସବୁ ଟ୍ରେନ୍ ଛାଡ଼ିଦେଲୁ, ସମସ୍ତଙ୍କୁ ହାତ ହଲାଇ କହିଲୁ ଗୁଡ୍ ବାଇ, ଗୁଡ ବାଇ

( ଶବ୍ଦ ଛନ୍ଦ )

## ଅନେକ ଦିନୁଁ ନଦେଖା ଜଣେ ବନ୍ଧୁଙ୍କ ଉଦ୍ଦେଶ୍ୟରେ

ମତେ ଜଣା ନାହିଁ ସେ କେଉଁଠି ଅଛି, ଦେଶରେ କି ବିଦେଶରେ ।
ସେ ଖାଲି ଅଛି ବୋଲି ଶୁଣିଲେ ସବୁ ତୁଟିଯାନ୍ତା,
ଜନ୍ ଫାଙ୍କା ଲାଗନ୍ତା ସନ୍ଧ୍ୟା ଆରମ୍ଭର ସମୟ,
ମ୍ୟୁଜିୟମ୍‌ର ଫଟା ପ୍ରାଗୈତିହାସିକ ବ୍ରୋଞ୍ଜ୍ ଗିନା ।

ମୋର ଏତକ ଅସମ୍ପୂର୍ଣ୍ଣ ପୂର୍ଣ୍ଣତାର ଅନୁଭବ ପାଇଁ କେବଳ
ସେ ଏଯାଏଁ କେଉଁଠି ନା କେଉଁଠି ଥିବା ଜରୁରୀ ନୁହେଁ ।
କିନ୍ତୁ କାହିଁକି ବାର୍‌ର ଦୂର ଅନ୍ଧାରୁଆ କୋଣରେ ବସିଥିବା
ଦୁଇଜଣଙ୍କ ଭିତରୁ ସେ ଜଣେ ହୋଇନଥିବ ?

ନାନା ମରୁଭୂମି ଓ ସମୁଦ୍ର, ନାନା ଆକାଶ,
ଚନ୍ଦ୍ର ତାରା, ଫୁଲ ଫଳ ଓ ଖରା ବର୍ଷା
ସବୁ ସାରିବା ପରେ ବି ନାନା ଦିଗରୁ, ନାନା ବାହାନାରେ କାହିଁକି
ଅନାଇଁ ରହିଛି ତା' ମୁହଁକୁ, କଲବଲ ହେଉଛି ହାତ ?

ସାନ ପିଲାଙ୍କ ପରି ବାଲିରେ ଘର କରିଛି, କୂଅ ଖୋଳିଛି
ସମୁଦ୍ର ପାଣି ମାଡ଼ି ଆସିବ ବୋଲି, ବସା ଗଢ଼ିଛି ଚଢ଼େଇ ପାଇଁ
ସେ ହଠାତ୍ ମିଳିଗଲେ ମୋ' ସ୍ୱପ୍ନ ଭୁଷୁଡ଼ି ପଡ଼ିବ, ପଡ଼ୁ,
ଛିନ୍ନଛତ୍ର ହୋଇଯିବ କାଠିକୁଟାର ବସା ତା' କୋଳାହଳରେ, ହେଉ ।

( ଶରତ ଦେବ )

ଯାହା କଣ୍ଠୁ ପୂର୍ଣ୍ଣ ହୋଇଯାଏ ଭାଙ୍ଗି ପଡ଼େ । ଉତ୍ସବ ସରିଲେ
ପାଲ, ଗୁନ୍ଦୁଆ, ତୋରଣ କାଢ଼ି ନିଆଯାଏ, ବାହୁଡ଼ିଯାନ୍ତି ଲୋକେ ।
ସେମାନଙ୍କ ଭିତରେ ସେ ଥିଲା ଅବା । ମୁଁ କେବେ ଜାଣିବି ନାହିଁ ।
ମୋର ନଜାଣି ପାରିବାର କାରଣ ବି ତ ନାହିଁ । ତେବେ ସେ ଅଛି

କେଉଁଠି ହେଲେ, ନିଶ୍ଚେ କେଉଁଠି, ଭାସୁଚି, ବୁଡ଼ୁଚି, ଉଠୁଚି ।
ଟିକେଟ୍ ଘର ଜଳାବାଟରେ ହାତ, ପଇସା ଫୁରାଇ ଦେଇ ମୁଁ
ଦେଖୁଚି ଟିକେଟ୍‌ବାଲା ଠିକ୍ ତା' ପରି ନିଶ ରଖିଚି, ହସୁଚି,
ସିଟି ମାରି ମୋ' ଗାଡ଼ି ଛାଡ଼ି ଭଲ ଖେଦି ଆସୁଚି ଷ୍ଟେସନ୍‌କୁ ।

( ଶହେ ଷୋହଳ )

# ପକ୍ଷୀ

ଏପାଖେ ଧୂ ଧୂ ଖବର ପରସ୍ପର ଆକ୍ରୋଶ,
ସେପାଖେ ଧୂ ଧୂ ଖବର ସ୍ପଷ୍ଟ ଅଭ୍ରଂଶପାତ,
ମଝିରେ ସବୁ ପାଣିଧାର ପରି, କଣୋଖର ଭୂତ୍ରୁ ପରି
ଅଦେଖା ଅଚହ୍ନା ପକ୍ଷୀର କାକଳି ।
ନ ଶୁଣିଥିଲେ ହୋଇଥାନ୍ତା । ଅନିବାର୍ଯ୍ୟ ଶୁଣିବା ।
ଅନିବାର୍ଯ୍ୟ ଚହ୍ଲାଁ ନ ପାରିବା କେଉଁଠି ହେଲେ,
କାହାର ହୋଇ ନ ପାରିବା, ମୁଣ୍ଡ ଗୁଞ୍ଜି ନ ପାରିବା
କାହା କେଶର ସୁଗନ୍ଧ ଜଞ୍ଜାଳରେ ।

ସାରା ସମସ୍ତ ବିତାଇ ଦେଲି ପକ୍ଷୀର ସନ୍ଧାନରେ ।
କୌତୁକରୁ ଶୋକ ଯାଏଁ ହାର୍ମୋନିଅମ୍‌ର ସବୁତକ ସ୍ୱର୍
ଟିପିଗଲି, ମନେ ପକାଇଗଲି ସବୁ ସୁଖ, ଅପବାଦ, ଲାଞ୍ଛନା,
ଉଆଁସ ରାତିର ଅଗଣାର ମଣିଣାରୁ ତାରା ନକ୍ଷତ୍ର ଗଣିଲି ପରି ।
ସବୁ ସ୍ପଷ୍ଟ, ନିରାପଦ, ସୁଦୂର ।
ଅଥଚ ମୋର ପୌରୁଷ ଆକ୍ରାନ୍ତ ଏମିତି ଅଭାବବୋଧରେ ଯେ
ପକ୍ଷୀକୁ ଠାବ ନ କଲିଯାଏ, ନ ଦେଖିଲିଯାଏ
ଏ ଜୀବନ ନର୍କେ ପଡ଼ିଥାଉ ।

ନର୍କ ଦେଖିଲି;
ପ୍ରାର୍ଥନା ତୀକ୍ଷ୍ଣ ଅସିଧାର ହୋଇ କାଟିଗଲା

( ଶତ୍ରୁ ସହର )

ମୋ ବନ୍ଧ ସୋଦରର ଅଙ୍ଗପ୍ରତ୍ୟଙ୍ଗ;
କଳ୍ପନା ଉଠିଲା ଲେଲିହାନ ଅଗ୍ନି ଶିଖାରେ,
ନବାକ୍ ଅଙ୍ଗାର କୁଡ଼ ଭିତରୁ ଖୋଜ ହେଲା ନାହିଁ,
ଚିହ୍ନି ହେଲା ନାହିଁ ମୋ' ଦାଦାଙ୍କର କୋମଳ ମୁହଁ:
ଗମ୍ଭୀର ବର୍ଷାକ୍ତ ମେଘ ଗ୍ରାଇଗଲା ଦଗ୍ ଦଗ୍
ପଢିବାରେ ଲାଗିଲା ସଢ଼ିବାରେ ଲାଗିଲା ଶବ୍ଦ, କାବ୍ୟ, ମୀମାଂସା ।
କଷ୍ଟ କଲୁ ଶେଷ ହେଲା ନାହିଁ, ଅଦୃଶ୍ୟ ହେଲା ନାହିଁ ।

ପକ୍ଷୀକୁ ମଧ୍ୟ ଦେଖିଲି,
ଶୁଖିଲା ରକ୍ତ, ପିମ୍ପୁଡ଼ି ଓ ଖପରାର ବଳୟ ଭିତରେ ।
ସବୁ ପକ୍ଷୀ ଏମିତି ଖସିପଡ଼ନ୍ତି,
ସବୁ ସୁଖ ଏମିତି ହଜିଯାଏ,
ସବୁ ସମ୍ପର୍କ ଏମିତି କଟିଯାଏ,
ଯେଉଁ ପକ୍ଷୀର ଡାକଲ ଶୁଣି ଦୌଡ଼ିଥିଲି କାଲୁ
ମନେହେଲା ଏ ପକ୍ଷୀ ଯେ ପକ୍ଷୀ ନୁହେ, ନୁହେ !

( ଶହେ ଅଠର )